ଜନଚେତନା : ୨୦୦୦

# ନିର୍ବାଚିତ ରଚନା





ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ଜନଚେତନା –୨୦୦୦

## ନିର୍ବାଚିତ ରଚନା



**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**

ଜନଶିକ୍ଷା ଭବନ, ୟୁନିଟ୍ - ୫

ଭୁବନେଶ୍ୱର - ୭୫୧୦୦୧

## 'ଜନଚେତନା' – ୨୦୦୦ (ନିର୍ବାଚିତ ରଚନା)


| | |
|---|---|
| ସଂପାଦନା | ଡକ୍ଟର ବିଭୂତି ପଟ୍ଟନାୟକ |
| ପ୍ରଥମ ପ୍ରକାଶ | ୨୦୦୧ |
| ପ୍ରକାଶକ | ଶ୍ରୀ ଭୁବନାନନ୍ଦ ତ୍ରିପାଠୀ<br>ନିର୍ଦ୍ଦେଶକ,<br>ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା<br>ଜନଶିକ୍ଷା ଭବନ,ୟୁନିଟ୍-୫,ଭୁବନେଶ୍ୱର- ୭୫୧୦୦୧ |
| ମୁଦ୍ରଣ ସଂଖ୍ୟା | ୨୦୦୦ |
| ପ୍ରକାଶନ ସଂଖ୍ୟା | ଏସ୍.ଆର୍.ସି.-୩୦୭-୧୩/୨୦୦୧ |
| ମୁଦ୍ରଣ | ଭୋଳାନାଥ ପ୍ରେସ୍<br>୧୨୦୧/୧୬୦୧, ବମିଖାଲ, ଭୁବନେଶ୍ୱର-୭୫୧୦୧୦ |
| ମୂଲ୍ୟ | ଆଠ ଟଙ୍କା ମାତ୍ର |


## JANA CHETANA - 2000 (SELECTED WRITINGS)


| | |
|---|---|
| Edited by | Dr. Bibhuti Pattnaik |
| 1st Edition | 2001 |
| Publisher | Sri Bhubanananda Tripathy<br>Director,<br>State Resource Centre for Adult Eduction, Orissa<br>Janasiksha Bhawan, Unit-5, Bhubaneswar - 751001 |
| No. of Copies | 2000 |
| Publication No. | SRC -307-13/2001 |
| Printed at | Bholanath Press<br>1201/1601, Bomikhal, Bhubaneswar- 751010 |
| Price | Rupees Eight only |

# ସୂଚୀପତ୍ର

# ଜନଚେତନା ସଂପର୍କୀୟ ସୂଚନା

- 'ଜନଚେତନା' ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ତ୍ରୈମାସିକ ମୁଖପତ୍ର ।
- ଏହା ସାକ୍ଷରତା ଯୋଜନା ଅନ୍ତର୍ଭୁକ୍ତ ଶିକ୍ଷାର୍ଥୀ, ସ୍ୱେଚ୍ଛାସେବୀ, ଲେଖକ ଏବଂ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ ।
- ଏହା ମୁଖ୍ୟତଃ ନବସାକ୍ଷରମାନଙ୍କ ପଠନ ଅଭ୍ୟାସ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ବିଭିନ୍ନ ରଚନା ସମ୍ଭାରରେ ସମୃଦ୍ଧ ହୋଇ ପ୍ରକାଶ ପାଇଥାଏ ।
- ବୟସ୍କ ନବସାକ୍ଷରମାନଙ୍କ ମନକୁ ଆକର୍ଷଣ କଲାଭଳି ଗଳ୍ପ, କବିତା, ପ୍ରବନ୍ଧ, ଏକାଙ୍କିକା ଏବଂ ସ୍ୱାସ୍ଥ୍ୟ ସଂପର୍କୀୟ ରଚନାମାନ ଏଥିରେ ସ୍ଥାନ ପାଇଥାଏ ।
- ଏଥିରେ ନବସାକ୍ଷରମାନେ ବୁଝିପାରିଲା ଭଳି ସରଳଭାଷା ଓ ସାବଲୀଳ ଶୈଳୀରେ ଲେଖାମାନ ପ୍ରକାଶ କରାଯାଇଥାଏ ।
- 'ଜନଚେତନା'ରେ ନବ ପ୍ରତିଭାମାନଙ୍କର ଲେଖା ପ୍ରକାଶ କରାଯାଇ ସେମାନଙ୍କୁ ଉତ୍ସାହିତ କରାଯାଇଥାଏ ।

# ପୁସ୍ତକ ସଂପର୍କରେ...

ଯେଉଁ ଅଣସାକ୍ଷରମାନେ ଲେଖି ପଢ଼ି ଶିଖିଲେ, ସେମାନଙ୍କ ପଠନ ଅଭ୍ୟାସ ଅବ୍ୟାହତ ନ ରଖିଲେ ପଢ଼ିଥିବା ପାଠ ଭୁଲି ଯିବାର ସମ୍ଭାବନା ଅଧିକ । ସେଥିପାଇଁ ସେମାନଙ୍କ ମନକୁ ଛୁଇଁ ପାରିଲା ଭଳି ସୁଖପାଠ୍ୟ ବିଷୟ ଗୁଡ଼ିକୁ ନେଇ ସହଜରେ ବୁଝି ପାରିବା ଭଳି ଭାଷାରେ ଲେଖା ପ୍ରକାଶ କରାଯିବା ଆବଶ୍ୟକ । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ତ୍ରୈମାସିକ ମୁଖପତ୍ର 'ଜନଚେତନା'ରେ ଏହିଭଳି ଗଳ୍ପ, କବିତା, ପ୍ରବନ୍ଧ, ଆଲୋଚନା, ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଜ୍ଞାନ ସଂପର୍କୀୟ ଲେଖା ପ୍ରକାଶ ପାଇଥାଏ । କିନ୍ତୁ ପତ୍ରିକାର ଆୟୁଷ ସାମୟିକ । ଗୋଟିଏ ସଂଖ୍ୟା ନିଃଶେଷିତ ହୋଇଗଲା ପରେ ତାହା ଆଉଥରେ ଛପା ଯାଏ ନାହିଁ । ନୂତନ ପାଠକମାନେ ସେସବୁ ଲେଖା ପଢ଼ିବାର ସୁଯୋଗ ପାଆନ୍ତି ନାହିଁ । ବହୁ ଭଲ, ଉପାଦେୟ ଲେଖା ହଜିଯାଏ ।

ଏହି କଥା ମନରେ ରଖି 'ଜନଚେତନା' ଅକ୍ଟୋବର-ଡିସେମ୍ବର-୧୯୯୯ ସଂଖ୍ୟାଠାରୁ ଆରମ୍ଭ କରି ଜାନୁୟାରୀ-୨୦୦୧ ସଂଖ୍ୟା ପର୍ଯ୍ୟନ୍ତ ପାଞ୍ଚୋଟି ସଂଖ୍ୟାର ଶ୍ରେଷ୍ଠ ରଚନାକୁ ପୁସ୍ତକ ଆକାରରେ ପ୍ରକାଶ କରିବା ଲାଗି ସ୍ଥିର କରାଗଲା । ଏହି ଲେଖା ନିର୍ବାଚନ ଦାୟିତ୍ୱ ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର (ଡକ୍ଟର) ଶରଚ୍ଚନ୍ଦ୍ର ଦାଶ, ଡକ୍ଟର ଭି.ବି. ଶାସ୍ତ୍ରୀ ଏବଂ ବରିଷ୍ଠ ଲେଖକ ଶ୍ରୀ ନରସିଂହ ମିଶ୍ରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଆନନ୍ଦର କଥା, ସେମାନେ ନିଜର ବହୁ ମୂଲ୍ୟ ସମୟ ବ୍ୟୟ କରି 'ଜନଚେତନା'ର ପାଞ୍ଚୋଟି ସଂଖ୍ୟାରୁ ବାରଗୋଟି ଲେଖାକୁ ନିର୍ବାଚନ କରିଛନ୍ତି । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ତରଫରୁ ଏହି ନିର୍ବାଚିତ ରଚନାଗୁଡ଼ିକ

ମଧ୍ୟରୁ ପ୍ରଥମ ଚାରୋଟି ଲେଖାକୁ ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟ (ଯୁଗ୍ମ) ବିବେଚିତ ଲେଖା ଭାବରେ ପୁରସ୍କୃତ କରାଯାଇଛି ଏବଂ ଅବଶିଷ୍ଟ ଆଠୋଟି ଲେଖାର ଛଅ ଜଣ ଲେଖକ ଲେଖିକାଙ୍କୁ ସାନ୍ତ୍ୱନା ପୁରସ୍କାର ଦିଆଯାଇ ସମ୍ବର୍ଦ୍ଧିତ କରାଯାଇଛି । ଭବିଷ୍ୟତରେ ଏହି ଉଦ୍ୟମ ଅବ୍ୟାହତ ରହିବ ଏବଂ ଲେଖକ ଲେଖିକାମାନେ ଏ ଦିଗରେ ଅଧିକ ଆଗ୍ରହୀ ହେବେ ବୋଲି ଆଶା ।

ଆମ ରାଜ୍ୟରେ ନବସାକ୍ଷରମାନଙ୍କ ପାଇଁ ଲେଖୁଥିବା ଲେଖକ ଲେଖିକାମାନଙ୍କ ସଂଖ୍ୟା ଖୁବ୍ ଅଳ୍ପ । ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ରଚନାକୁ ନବସାକ୍ଷରମାନଙ୍କ ପାଇଁ ଉପଯୋଗୀ ରଚନା ବୋଲି କେହି କେହି ଭ୍ରମ କରିଥାଆନ୍ତି । ନବସାକ୍ଷରମାନଙ୍କ ଲାଗି ଯଥେଷ୍ଟ ପରିମାଣରେ ଭଲ ଲେଖା ନଥିବାରୁ ଅନେକ ଶିଶୁ ସାହିତ୍ୟକୁ ପ୍ରୌଢ଼ମାନଙ୍କ ହାତରେ ଧରାଇ ଦଅନ୍ତି । ଫଳରେ ଏଭଳି ଲେଖା ବୟସ୍କ ନବସାକ୍ଷରମାନଙ୍କ ପାଇଁ ଆନନ୍ଦଦାୟକ ହୁଏ ନାହିଁ । ସେଥିପାଇଁ ଓଡ଼ିଶାର ଲେଖକ ଲେଖିକାମାନଙ୍କ ମଧ୍ୟରେ ନବସାକ୍ଷରମାନଙ୍କ ଉପଯୋଗୀ ରଚନା ଲେଖିବା ପାଇଁ ଉତ୍ସାହ ସୃଷ୍ଟି କରିବା ଲକ୍ଷ୍ୟରେ ଆମେ ଏହି ନିର୍ବାଚିତ ରଚନା ପ୍ରକାଶ କରିବା ସଂଗେ ସଂଗେ ଲେଖକ ଲେଖିକାମାନଙ୍କୁ ସମ୍ବର୍ଦ୍ଧନା ଜଣାଉଛୁ ।

ତା ୨୮-୩-୨୦୦୧
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

ବିଭୂତି ପଟ୍ଟନାୟକ
ସଂପାଦକ
'ଜନଚେତନା'

# ହାତ ଅଲସେ ନିଶବଙ୍କା

ଡକ୍ଟର ଚକ୍ରଧର ବିଶ୍ୱାଳ



ସନ୍ଧ୍ୟା ସମୟ । ମାଗୁଣି ଅଜାଙ୍କ ଦାଣ୍ଡଘରେ ଟି.ଭି. ବାଜୁଥାଏ । ଅଳ୍ପ ସମୟ ପରେ ସମାଚାର ପ୍ରସାରଣ ହେବ । ସମାଚାର ଶୁଣିବା ଲାଗି ଅଜାଙ୍କ ଘରେ ନଟ, ମକୁରୁ, ନରହରି, ଭଜମନ ଓ ଆହୁରି କେତେଜଣ ଏକାଠି ବସିଥାନ୍ତି । ଏହି ସମୟରେ ଟି.ଭି.ରେ ଗୀତଟିଏ ବାଜି ଉଠିଲା- 'ଘର ପଛପଟେ ନାଳ ନରଦମା, ଏଠି ସେଠି ଜମେ ପାଣି' । ଗୀତଟା ଶୁଣି ନଟ କହିଲା, ''ଧେତ୍, ଯାବତ ଅସନା କଥା । ମଣିଷ ସମାଚାର ଶୁଣିବାକୁ ଅନେଇକି ବସିବା ବେଳକୁ ଆଙ୍କର ନାଳ ନର୍ଦ୍ଦମା କଥା ପ୍ରଚାର ଚାଲିଛି । କିହୋ, ତୁମର କ'ଣ ଆଉ କିଛି କହିବାକୁ ନାହିଁ ? ଖାଲି ନାଳନର୍ଦ୍ଦମା, ଅସନା ପାଣି, ଆଉ ମଶାମାଛି କଥା କହି ଆମର ସମୟ ବରବାଦ୍ କରିବ ?'' ନଟର କଥାରେ ଚିହିଁକି ପଡ଼ିଲେ ମାଗୁଣି ଅଜା । କହିଲେ, ''ହଇରେ ନଟ, ତୁ କାହିଁକି ହଉଚୁ ଭଟ ଭଟ ? ତୋର ଟିକିଏ ବି ଧୈର୍ଯ୍ୟ ନାହିଁ । ଟି.ଭି.ରେ କ'ଣ ଦେଖାଉଚି ଦେଖ୍; ସେ ଗୀତରେ କ'ଣ କୁହାଯାଉଛି ଶୁଣ୍ । ସମାଚାରଟା ଆଗ ସରିଯାଉ । ତା'ପରେ ତତେ ମୁଁ ଯାହା କହିବା କଥା କହିବି ।'' ଅଜାଙ୍କ କଥା ସରିବା ବେଳକୁ ସମାଚାର ପ୍ରସାରଣ ବେଳ ଆରମ୍ଭ ହୋଇଗଲା । ସମସ୍ତେ ମନଦେଇ ସମାଚାର ଶୁଣିଲେ ।

ସମାଚାର ସରିବା ପରେ ନଟ ପଚାରିଲା, ''ହଇହେ ଅଜା, ମତେତ ବହେ ଶୁଣେଇ ଦେଲ । ଏବେତ ସମାଚାର ସରିଲା । କ'ଣ ବୁଝେଇବ ବୋଲି କହୁଥିଲ ପରା, ବୁଝେଇଲ ଟିକେ । 'ନାଳନରଦମା' ଗୀତଟାକୁତ ତୁମେ ଏକାଗ୍ରରେ ପୂରା ପିଇଯାଉଥିଲ ।'' ଅଜା କହିଲେ, ''ବାବୁ ନଟବର, ହୁଅନାହିଁ ଏବେ ତରବର ।

କହୁଚି, ଯାହା କହିବା କଥା କହୁଚି ।'' ଅଜାଙ୍କ ଆଡ଼କୁ ଅନ୍ୟମାନେ ଅନେଇ ରହିଲେ । ଟି.ଭି. ବନ୍ଦ କରି ଦିଆଯାଇଥାଏ । ଅଜା କହିଲେ, ''ନଟରେ, ଆମ ଗାଁ ଗହଳିରେ ଗୋଟିଏ କଥା କୁହାଯାଏ- 'ହାତ ଅଳସେ ନିଶବଙ୍କା' । ଏକଥାଟି ତୁ ଶୁଣିଥିବୁତ ।'' ନଟ କହିଲା, ''ହଁ ଅଜା, ଥରେ ନୁହେଁ, କେତେଥରତ ଏ କଥାଟି ମୋ କାନରେ ପଡ଼ିଚି ।'' ଅଜା ପଚାରିଲେ, ''କଥାଟା ଖାଲି କାନରେ ପଡ଼ିଚି ନା ତୋ ମଗଜରେ ବି ପଶିଚି ?'' ନଟ କହିଲା, ''ଅଜା, ତୁମେ ସିଧାସିଧା କହୁନା, ଏମିତି ବଙ୍କେଇକି କହିଲା ବେଳକୁ ମୁଁ ତ ତୁମକଥା ବୁଝିପାରୁନାହିଁ ।'' ଅଜା କହିଲେ, ''ହଇରେ, ହାତ ଅଳସେ ନିଶବଙ୍କା କଥାଟାର ଅର୍ଥ କ'ଣ ତୁ ବୁଝିଚୁତ ? କାହିଁକି ଲୋକେ ଏମିତି କହନ୍ତି ?'' ନଟ ଉତ୍ତର ଦେଲା, ''କଥାଟା ଅତି ସହଜ ଅଜା । ଅଳସୁଆ ହେଲେ ମଣିଷ କେମିତି ଅତି ସାଧାରଣ କାମଟି କରିପାରେନା, ସେଇ ବିଷୟକୁ ଏଠାରେ ଇଙ୍ଗିତ କରାଯାଇଛି ।'' ଅଜା ଏଥର ବଳ ପାଇଯାଇ କହିଲେ, ''ହାଁ, ଠିକ୍‌କଥା କହିଲୁରେ ନାତିଆ । ନାକତଳର ନିଶ, ସେ ପୁଣି ମଣିଷର ହାତ ପାଆନ୍ତାରେ । କିନ୍ତୁ ଅଳସୁଆ ହେଇ ତୁ ଯଦି ନିଶରେ ଟିକେ ହାତ ନମାରିବୁ, ତାକୁ ସଳଖେଇ ନଦେବୁ, ତା'ହେଲେ ଚକଚକିଆ ନିଶଟି ତୋର ବଙ୍କା ହେଇ ରହିଯିବ । ବେଢ଼ଙ୍ଗ ଦିଶିବ । ତାକୁ ଦେଖି ଅନ୍ୟମାନେ ହସିବେ, ଆଉ ତତେ ଥଟ୍ଟା କରିବେ । କେବଳ ଆମର ଅଳସୁଆମି ଯୋଗୁଁ ଅନେକ ବିଷୟରେ ଆମେ 'ଜାଣି ଅଜଣା' ଭଳି ବ୍ୟବହାର କରୁଚେ । ଆମର ଏଇ ଦୋଷକୁ କାଟିବା ଲାଗି ଏବଂ ଆମକୁ ଟିକିଏ ମନଛୁଆଁ ଢଙ୍ଗରେ ଚେତେଇ ଦେବା ପାଇଁ ଟି.ଭି.ରେ ବେଳେବେଳେ ଏମିତିକା ଗୀତ ଶୁଣାଇବାକୁ ପଡୁଚି ।''

ପାଖରେ ବସିଥିଲା ଭଜମନ । ସେ କହିଲା, ''ଅଜା, ତୁମେ ସେ ଯେଉଁ ନିଶବଙ୍କା କଥାଟି କହିଲ, ତାକୁ ଟିକେ ଖୋଲାସା କରି ବୁଝେଇଲ । ମଜା ଲାଗୁଚି ଶୁଣିବାକୁ ।'' ଅଜା କହିଲେ, ''ବେଶି ବାଟ କାହିଁକି ଯିବା, ତୁ ଆଗ ତୋ ଆଙ୍ଗୁଳିକୁ ଚାହିଁଲୁ । ତୋ ନଖଗୁଡ଼ା କେଡ଼େ କେଡ଼େ ବଢ଼ିଲାଣି । ସେ ନଖ ସନ୍ଧିରେ ମଇଳାଜମି କେମିତି କଳା ଦିଶୁଚି ସେଟା ତୋ ଆଖିରେ ପଡୁଚିନା ନାହିଁ ? କୋଉ ଖୁସିରେ ଏ ନଖ ବଢ଼େଇଚୁ ? କ'ଣ ଦେହର କୁଣ୍ଡିଆ କୁଣ୍ଡେଇବୁ ନା ଯାଦୁ ରାମ୍ପିବୁ ?'' ଅଜାଙ୍କ କଥାରେ ଭଜମନ

ଲାଜେଇ ଗଲା । ଅଜା କହିଲେ, ''ଏତେବେଳକୁ ଲାଜ ଲାଗୁଚି । ନଖ ସନ୍ଧିରେ ମଇଳା ଜମାକରି ରଖିନାହୁଁ ଯେ ରୋଗର ବିହନକୁ ସେଠି ସାଇତିଚୁ । ସେଇ ବିହନସବୁ ତୋ ଖାଇବା ଦରବ ଭିତରେ ପଶି ପେଟକୁ ଚାଲିଯାଉଚି, ଆଉ ତୋ ପାଇଁ ଜାତିଜାତିକା ରୋଗ ଭେଇବାକୁ ମୂଳଦୁଆ ପକାଉଛି । ଆରେ, ତୁ କ'ଣ ଏତିକି ଜାଣି ନାହୁ, ନଖ ବଢ଼ାଇଲେ ଯାବତ ମଇଳା ନଖ ସନ୍ଧିରେ ରହିବ । ସେଇ ମଇଳା ଭିତରେ ଥିବା ରୋଗ ଜୀବାଣୁ ତୋ ପେଟ ଭିତରକୁ ଅତି ସହଜରେ ଚାଲିଯିବେ । ତୋ ନଖ ଯେମିତି ଦିଶୁଚିନା ତୋ ହାତରୁ ପାଣି ଗିଲାସେ ପିଇବାକୁ କାହାରି ମନ ହେବ ନାହିଁ । ତୁ ଚାହିଁଥିଲେ ନଖକୁ କାଟି ଦେଇ ପାରିଥାନ୍ତୁ । କେତେ ସମୟ ବା ଲାଗିଥାନ୍ତା । ତା' ନକରି ସଉକରେ ତୁ ନଖ ବଢ଼ାଇଚୁ । ଏମିତି ଅଲଣା ସଉକ ଓ ନିଲଠା ଅଳସୁଆମି ଦେଖିଲେ ମୋ ହାଡ଼ ଚିଡ଼େ । ଭଜମନ କହିଲା, ''ଥାଉ, ଆଉ ରାଗ ନାହିଁ ଅଜା । ମୋ ଭୁଲ୍ ମୁଁ ବୁଝିଲିଣି । ତା ସାଙ୍ଗେ ସାଙ୍ଗେ 'ହାତ ଅଳସେ ନିଶବଙ୍କା' କଥାଟିର ଅର୍ଥ ମଧ୍ୟ ଭଲକରି ବୁଝିଗଲି । ଆଜି ଏଠୁ ଯିବାମାତ୍ରେ ଆଗେ ନଖ କାଟିବି; ତା'ପରେ ଯାଇ ଅନ୍ୟକାମ ।''

ଅଜା କହୁଥାନ୍ତି, ତାଙ୍କ କହିବାର ଢ଼ଙ୍ଗଟି ଏମିତି ହେଉଥାଏ ଯେ, ଅନ୍ୟମାନେ ଏକଲୟରେ ଶୁଣିବାରେ ଲାଗିଥାନ୍ତି । ଅଜା କହିଲେ, ''ଆରେ, ଘର କରି ରହିଚେ ଯେତେବେଳେ କାହାଘରେ ଅଳିଆ ନ ଜମୁଚି । ଅଳିଆ ତ ହେବ । ତା' ବୋଲି କ'ଣ ଅଳିଆକୁ ଶୋଇବା ଘରେ ମୁଣ୍ଡତଳେ ଦେଇ ଶୋଇବା ନା ରନ୍ଧାଘରେ ନେଇ ସାଇତିବା ! ନଟ କହିଲା, ''କି କଥା ତୁମେ କହୁଚମ ଅଜା ! ଅଳିଆକୁ ବାହାରେ ପକେଇଦେବା କଥା, ଘର ଭିତରେ ରଖିବା କାହିଁକି ? ଆମେ କ'ଣ ଅଳିଆତକ ବାହାରେ ପକାଉ ନାହୁଁ ?'' ଅଜା ଉତ୍ତର ଦେଲେ, ''ହଇରେ ବଗୁଲିଆ, ଅଳିଆ ପକାଉଚଯେ, କିନ୍ତୁ କୋଉଠି ପକାଉଚ ? ଘରୁ କାଢ଼ିନେଇ ତାକୁ ଦାଣ୍ଡ ଦୁଆରେ ପକାଉଛ, ନହେଲେ କିଏ କିଏ ଅଳିଆତକ ନେଇ ନିଜ ଶୋଇବା ଘର କି ରନ୍ଧାଘରର କାନ୍ଥକୁ ଲାଗି ବାଡ଼ି ପଛଆଡ଼େ ପକାଉଛ । ମୁଁ କ'ଣ ଦେଖୁନାହିଁ ? ନିଜ ଘର ଅଳିଆକୁ ଦାଣ୍ଡରେ ପକାଉଛ କାହିଁକି ? ତାକୁ ନେଇ ନିଜ ବାଡ଼ିରେ ଘର ପାଖରୁ ଟିକିଏ ଦୂରରେ ଗୋଟେ ଗାତଖୋଳି ତା' ଭିତରେ ପକାଉନା ? ଅଳିଆତକ ସେଇ ଗାତରେ ପଡ଼ି ସଢ଼ିଯିବା ପରେ ଖତ ହେଇ

ତୁମରି କାମରେ ଲାଗନ୍ତା ନା ନାହିଁ ? ତାହିଁଲେ ତୁମେ ସେ କଥା କରିପାରନ୍ତ ? କିନ୍ତୁ ତୁମକୁ ଖାଉଚି ତୁମ ଅଳସୁଆମି । ଟିକିଏ କଷ୍ଟକରି କାମଟାକୁ ବୁଝିବିଚାରି କରିବାକୁ ତୁମର ମନ ନାହିଁ । ସେଇଥିପାଇଁ ପରା କହନ୍ତି- ''ହାତ ଅଳସେ ନିଶବଙ୍କା ।''

''ସେଦିନ ମୁଁ ମକୁରୁ ଘରକୁ ଯାଇଥିଲି । ସେ ଘରେ ନଥିଲା । କାଳେ ବାଡ଼ି ପଟେ ଥିବ ବୋଲି ଗଲାବେଳକୁ ତା କୂଅ ପାଖରେ ମୁଁ ତ ଥ' ହେଇ ଠିଆହେଇଗଲି ।'' ମକୁରୁତ ସେଇଠି ବସିଥିଲା । ପଚାରିଲା, ''ମଉସା, କ'ଣ ଏମିତି ଦେଖିଲ କି ସେଠି ! ମୁଁ ତ ଘରେ ନଥିଲି; ବିଲକୁ ଯାଇଥିଲି ।'' ଅଜା କହିଲେ, ''ଆରେ ମକୁରୁ, ତୁ ପରା ନବମ ଶ୍ରେଣୀ ଯାଏ ପଢ଼ିଚୁ ? ତୋ କୂଅ ମୂଳଟାକୁ କ'ଣ କରିଚୁରେ ! କୂଅ ପାଖ ଚାରିଦିନି ଚାରିପଟେ ଖାଲି ପାଣି କାଦୁଅ ପଚପଚ । ନାଳଟିକେ କରିଦେଇଥିଲେ, କୂଅ ମୂଳର ପାଣିତ ଚାଲି ଯାଆନ୍ତା ତୋ କଦଳୀବାଡ଼ିକୁ । କୂଅ ମୂଳରେ ପାଣି ଜମୁଚି । ଲୁଗାପଟା ସଫା କରିବାର ପାଣି, ବାସନ ଧୂଆ ପାଣି, ଅଇଣ୍ଠା କଣ୍ଟା ପାଣି ସବୁ ଏକାକାର ହେଇ ତୋ କୂଅମୂଳଟାକୁ ଗୋଟାଏ ନର୍ଦ୍ଦମା କରିଦେଇଚି । ସେଇପାଣି ପୁଣି ମାଟି ଭେଦକରି ତଳକୁ ଯାଉଚି, କୂଅ ପାଣିରେ ମିଶୁଚି, ଆଉ ସେଇ କୂଅପାଣିକୁ ନେଇ ତୁ ନର୍ଦ୍ଦମା କରିନାହୁଁ ଯେ, ମଶାମାଛିଙ୍କ ବଂଶ ବଢ଼େଇବା ଲାଗି ଗୋଟେ ଜବର କାରଖାନା ବସେଇଛୁ । ମଶାଙ୍କ ମଧୁର ସଂଗୀତ ନଶୁଣିଲେ ରାତିରେ ତୋତେ ଭଲ ନିଦ ହେଉନାହିଁ ପରା ! ପାଠ ଶାଠ ପଢ଼ି ତୁ କ'ଣ ଏତିକି ଜାଣି ପାରୁନାହୁଁ ? ସେଇଥି ପାଇଁ କହୁଥିଲି- ଏସବୁ ଆମ ଜାଣିଅଜଣା ପଣିଆ । ହାତ ଅଳସେ ନିଶବଙ୍କା ବୋଲି ଆଉ କାହିଁକି କହନ୍ତି କି ?''

ଶୁଣିବା ଲୋକଙ୍କ ମନକୁ କଥାଗୁଡ଼ା ପାଇଯାଉଥିବାର ଅନୁଭବ କରି ଅଜା ପୁଣି କହିଲେ, ''ଜଳ ହେଲା ଜୀବନ । ଯେତେ ଯେତେ ପଦାର୍ଥରେ ଆମ ଦେହଟି ତିଆରି, ତାର ବେଶି ଭାଗ ତ ଜଳ । ପାଣି ମୁନ୍ଦିଏ ନହେଲେ ଆମେ ବଞ୍ଚିପାରିବାକି ? ସେଇ ପାଣିକୁ ବ୍ୟବହାର କରିବା ଦିଗରେ ଆମେ ସାବଧାନ ହେଉନାହୁଁ । ଗଭୀର କୂପ ବା ନଳକୂପର ପାଣି ପିଇବାକୁ ଏବେ ମଧ୍ୟ କିଛି ଲୋକ ନାକ ଟେକୁଛନ୍ତି । ଗାଁରେ ନଳକୂଅରତ ଆଗଭଳି ଆଉ ଅଭାବ ନାହିଁ । ତଥାପି ଆମ ଗାଁର କିଛି ଲୋକ ନାଳପାଣି ଆଣି ପିଉଛନ୍ତି

କାହିଁକି ? ପଚାରିଲେ କହିବେ କ'ଣନା, ନଳକୂଅ ପାଣି ପାଟିକୁ ସୁଆଦ ଲାଗୁନାହିଁ । କିରେ ବାବୁ, ତୁମେ ନାଳ ପାଣି ଆଣି ପିଉଚଯେ, ତା' ସାଥିରେ ଯାବତ ଅଳିଆ ଆବର୍ଜନାକୁ ମଧ୍ୟ ପିଉଚ । ଆଗକାଳରେ ନଈନାଳର ପାଣି ଯେମିତି ସଫା ରହୁଥିଲା, ଏବକୁ କ'ଣ ଆଉ ସେମିତି ଅଛି ? ଦିନ ଆଗେଇବା ସାଙ୍ଗେ ସାଙ୍ଗେ ଦେଶର ଲୋକସଂଖ୍ୟା ବଢୁଚି । ଆମ ଗାଁ କଥା ଦେଖୁନା ! କେତେ ମଣିଷ ବଢ଼ିଲେଣି ! ଛୁଆମାନଙ୍କୁ ପରା ଆଉ ଜାଣି ହେଉନାହିଁ । ତାଙ୍କୁ ଚିହ୍ନିବା କଷ୍ଟ ହେଲାଣି । ମଣିଷଙ୍କ ସଂଖ୍ୟା ବଢ଼ିବା ସହିତ ମଇଳା ବଢୁଚି, ଆବର୍ଜନା ବଢୁଚି । ନିଜ ବାଡ଼ିରେ ତ ପାଇଖାନାଟିଏ କରିବାକୁ ତୁମର ମନ ନାହିଁ । ପ୍ରକୃତି ମେଣ୍ଟାଇବା ପାଇଁ ସକାଳେ ସଂଜେ ଦଉଡୁଚ ନାଳକୂଳକୁ ନହେଲେ ନଈକୂଳକୁ । ସେ ଜାଗା ମଇଳା କରୁଚ । ସେ ମଇଳା ମିଶୁଚି ନାଳ ପାଣିରେ ଓ ନଈପାଣିରେ । ସେ ପାଣି ପିଇବାକୁ ତୁମକୁ ସୁଆଦ ଲାଗୁଚି, ଅମୃତ ଭଳି ଲାଗୁଚି; ଅଥଚ ନଳକୂଅର ପାଣି ତୁମକୁ ରୁଚୁନାହିଁ । ଏଥିରେ ତୁମ ଦେହ ଖରାପ ହେବ ନାହିଁତ ଆଉ କାହାର ହେବ ? ପାଣି ପିଇବା ବେଳେ ସାବଧାନ ହେବା ଦରକାର । ନଈନାଳର ପାଣି ନପିଇ କୂଅପାଣି ବା ନଳକୂଅର ପାଣି ପିଅ ।



''ପାଣି ପିଇବ ଛାଣି'' କଥାଟି ଆମେ ସବୁ ଛୁଆଦିନେ ଶୁଣିଥିଲୁ । ଏବେ ପାଣିକୁ ଖାଲି ଛାଣି କରି ପିଇଲେ ଚଳିବ ନାହିଁ । ତାକୁ ଭଲ ଭାବରେ ନିଆଁରେ ଫୁଟାଇ ଶୀତଳ କରି ଛାଣି ଦେବାକୁ ହେବ । ପିଇବା ପାଣିକୁ ପରିଷ୍କାର ପାତ୍ରରେ ରଖିବାକୁ ପଡ଼ିବ । ପାତ୍ରରୁ ପାଣି କାଢ଼ିବା ବେଳେ ତହିଁରେ ହାତ ବୁଡ଼ାଇବା ନାହିଁ । ଗିଲାସରୁ ପାଣି ପିଇବା ବେଳେ ଅଥବା କାହାକୁ ଗିଲାସରେ ପାଣି ଦେଲାବେଳେ ସେଥିରେ ନିଜର ଆଙ୍ଗୁଳି ବୁଡ଼ାଇବା ନାହିଁ । ନହେଲେ ଆମ ଆଙ୍ଗୁଳିର ମଇଳା ପାଣିରେ ମିଶି ତାକୁ ଦୂଷିତ କରିଦେବ ।'' ଏତିକି ବେଳେ ନଟ କହିଲା, ''ହଁ ଅଜା, ତୁମେ ଭଲ କଥାଟିଏ ମନେ ପକେଇ ଦେଲ । ପିଇବା ପାଣିକୁ କେମିତି ସଂଗ୍ରହ କରିବା, କେମିତି ରଖିବା ଓ କେମିତି ଲମ୍ବାନାଡ଼ ଥିବା ଡଙ୍କିରେ ପାଣିକୁ କାଢ଼ି ପିଇବା, ସେ କଥାତ ଟି.ଭି.ରୁ ମୁଁ କେତେଥର ଦେଖିଚି ।'' ଅଜା କହିଲେ, ''ଖାଲି ଦେଖୁଚ ନା ସେଥିରୁ କିଛି ଶିଖୁଚ ? ସବୁ ଦେଖୁଚ, ସବୁ ଶୁଣୁଚ; କିନ୍ତୁ କାମ କଲାବେଳକୁ ଓଲଟା କରୁଚ । ଆଉ ଜାଣି ଅଜଣା ହୁଅନା; ଚେଇଁ ଶୋଇବା ଢଙ୍ଗଟି ଛାଡ଼ । ପିଇବା ପାଣିକୁ ଫୁଟାଇ ପିଇବାର ଅଭ୍ୟାସ କର । ହାତ ଅଳସେ ନିଶବଙ୍କା ଦୋଷରେ ଆଉ ଦୋଷୀ ହୁଅନା ।''

ଅଜାଙ୍କ କଥାଶୁଣି ନଟ କହିଲା, ''ଅଜା, ତୁମେ ଭଲକଥା କହୁଚ ଯେ, କିନ୍ତୁ ଆମେ ଏସବୁ କରିବୁ କେମିତି ? ଏବେତ ଭାତ ଦି'ଟା ରାନ୍ଧିବାକୁ ଜାଳଟିକିଏ ମିଳୁନାହିଁ । ସେଥିରେ ପୁଣି ତୁମେ ପିଇବା ପାଣିକୁ ଫୁଟାଇକି ପିଇବା କଥା କହୁଚ । କୋଉଠୁ ପାଇବୁ ଜାଳକାଠ ?'' ନଟର କଥାଶୁଣି ଅଜା କହିଲେ, ''ଭଲ କଥାଟିଏ କହିଲୁ । ଜାଳେଣି ଅଭାବ ହେଉଚି । ଏହା ନିରାଟ ସତ । କିନ୍ତୁ କାହିଁକି ଏହା ଘଟୁଚି ଜାଣିଚୁତ ? କଥାରେ କହନ୍ତି- 'ଧନର ବଇରୀ କୁଟୁମ୍ବ' । କୁଟୁମ୍ବ ସଂଖ୍ୟା ବଢ଼ିଲେ ଘରର ସଂପଦ ଉପରେ ଚପଟ ପଡ଼େ । ଏବେତ ପ୍ରତି ପରିବାରରେ, ପ୍ରତି ଗାଁରେ ମଣିଷ ହାଉଯାଉ । ଆମ ଦେଶର ଲୋକସଂଖ୍ୟା ପରା ଶହେକୋଟିକୁ ଟପିଲାଣି । ଏମିତି ଢଙ୍ଗରେ ଲୋକସଂଖ୍ୟା ବଢୁଥିବାରୁ ଆମ ଗାଁର, ଆମ ଦେଶର ସଂପଦ ଉପରେ ଚପଟ ନପଡ଼ିବ କେମିତି ? ଧାନ, ଚାଉଳ, ଗହମ, ତେଲ, ଲୁଣ, ଚିନି ଯେମିତି ଦେଶର ସଂପଦ, ଗଛଲତା ବି ସେମିତି ଦେଶର ସଂପଦ । ପ୍ରବଳ ଭାବରେ ଜନସଂଖ୍ୟା ବଢୁଥିବାରୁ

ଗଛଲତା ବେଶି କଟା ଯାଉଛି । ରହିବା ଲାଗି, ଘର କରିବା ପାଇଁ, ଦୁଆର ଝରକା, ଖଟ ପଲଙ୍କ, ଚଉକି ଟେବୁଲ୍ ତିଆରି କରିବା ପାଇଁ ଆମର ଅଧିକରୁ ଅଧିକ କାଠ ଲୋଡ଼ା ହେଉଚି । ବେଶି ମଣିଷଙ୍କ ପାଇଁ ବେଶି ଚୁଲି ଦରକାର ହେଉଚି । ଚୁଲି ସଂଖ୍ୟା ବଢୁଥିବାରୁ ଅଧିକ ଜାଳେଣି ଆବଶ୍ୟକ ପଡୁଚି । କିନ୍ତୁ ଏ ଚାହିଦାକୁ ପୂରଣ କରିବା ଲାଗି ଯାହା କରିବାର କଥା ଆମେ ତ ତାହା କରୁନେ । ଅନ୍ଧାର ଅନ୍ଧାର ବୋଲି ସମସ୍ତେ ପାଟି କରୁଚନ୍ତି, ଅଥଚ ଦୀପଟିଏ ଜଳାଇଦେବା ପାଇଁ କାହାରି ହାତ ଚଳୁନାହିଁ । ଏଥିରେ ଅନ୍ଧାର ଟଳିବ କେମିତି ! କାଠର ଚାହିଦା ପୂରଣ କରିବା ଲାଗି ଦେଶରେ ଅଧିକ ଗଛ ଥିବା ଦରକାର । ଆମେ ସମସ୍ତେ ଗଛଲତା ଲଗାଇ ସେସବୁର ଯତ୍ନ ନେଲେ ସିନା ଗଛ ସଂଖ୍ୟା ବଢ଼ିବ । କିନ୍ତୁ ସେଥିପାଇଁ ଆମର ଏତେ ମନନାହିଁ । ତୁମେ ଜାଣିଥିବ, ଏବେ ଆମ ଗାଁମାନଙ୍କରୁ ଆମ୍ବ, ଜାମୁ, ପଣସ, ପିଜୁଳି ଭଳି ଗଛ ପ୍ରାୟ ଶେଷ ହୋଇଗଲାଣି । ଛୁଆମାନେ ଆଉ କୋଳିଦି'ଟା ଖାଇବାକୁ ପାଉନାହାନ୍ତି । ଆମ ବାଡ଼ି ବଗିଚାରେ ଆମ୍ବ, ଜାମୁ, ପିଜୁଳି, ପଣସ, ନଡ଼ିଆ ପରି ଫଳଗଛ ଓ ତେନ୍ତୁଳି, କରଞ୍ଜ, ନିମ ଭଳି ଦରକାରୀ ଗଛ ତ ଆମେ ଲଗାଇ ପାରନ୍ତେ । ଆମରି ପୁଅନାତି ସେଇଗଛରୁ ଉପକାର ପାଆନ୍ତେ । ଗଛରୁ ଆମକୁ ଫଳ ମିଳନ୍ତା ଏବଂ ଆମର ଜାଳେଣି ଚାହିଦା ମଧ୍ୟ ଅନେକ ପରିମାଣରେ ମେଣ୍ଟିଯାଆନ୍ତା । କିନ୍ତୁ ସେତିକି କରିବାକୁ ମଧ୍ୟ ଆମେ ମନଦେଉନେ । ଆମ ଗାଁ ରାସ୍ତାକଡ଼ରେ ବର, ଅଶ୍ୱତ୍ଥ, ଅର୍ଜୁନ, ନିମ ଗଛ ଲଗାଇ ତାର ଯତ୍ନ ନେଲେ ଆମର କେତେ ଉପକାର ନହୁଅନ୍ତା ! ଆମର ମନେ ରଖିବା ଦରକାର- ଗଛ ନୁହେଁ ସେ ମିତଟିଏ । ଗଛ ଆମର ବଡ଼ ଉପକାରୀ ବନ୍ଧୁ । ନିଜ ବାଡ଼ି ବଗିଚାରେ ଜାଗା ଅଛି । ଚାହିଁଲେ ଆମେ କେତୋଟି ଚାରା ଲଗାଇ ପାରନ୍ତେ । କିନ୍ତୁ ଆମକୁ ଭଲବୁଦ୍ଧି ଦେଖାଯାଉନାହିଁ । ଭଲକାମ କରିବାକୁ ହାତ ଚଳୁନାହିଁ । ଏତେବଡ଼ ବାତ୍ୟା ହୋଇଗଲା । ଆମ ରାଇଜରେ କେତେକେତେ ଜାଗା ଗଛଲତା ଶୂନ୍ୟ ହୋଇ ଛାରଖାର ହୋଇଗଲା । ତଥାପି ଆମର ଚେତା ପଶୁନାହିଁ । ଗଛଲଗାଇବାକୁ ଯେମିତି ତତ୍ପର ହେବାକଥା ଆମେ ହେଉନେ । ଏସବୁ ଦେଖିଲେ ହାତ ଅଳସେ ନିଶବଙ୍କା ବୋଲି କିଏ ଅବା ନ କହିବ କହିଲ ।''

ଅଜାଙ୍କ କଥାରୁ ତାଙ୍କ ମନରେ ବେଦନା ଜଣା ପଡୁଥିଲା । ତାଙ୍କ କଥାର ମରମଟି ବୁଝି ପାରୁଥିଲେ ଅନ୍ୟମାନେ । ନଟ କହିଲା, ''ଅଜା, ଆଜି ଭଲଯୋଗରେ ଆମେ ଏକାଠି ହୋଇଥିଲେ । କେତେକେତେ ଭଲକଥା ତୁମେ କହିଲ । ତୁମକୁ କଥା ଦେଉଛୁ, ଏସବୁ ଆମେ ମାନି ଚଳିବୁ । ଏଭଳି ଭଲକାମ କରିବାକୁ ଆଉ ପଛଘୁଞ୍ଚା ଦେବୁନାହିଁ । ଆମ ହାତର ଅଳସ ପଣିଆ ଦୂରକରି ଖାଲି ନିଜର ନିଶକୁ ନୁହେଁ, ଆମ ଚାରିପାଖରେ ଯାହା ଯାହା ବଙ୍କା ତେଢ଼ା ଅଛି, ସେସବୁକୁ ସିଧା ସରପଟ କରିଦେବୁ । ଏମିତି ସଳଖସୁନ୍ଦର କରିଦେବୁ ଯେ, ଦେଖିବା ଲୋକ ଘଡ଼ିଏ ଅନେଇ ରହିବ ।'' ମୁହଁରେ ହସ ଫୁଟାଇ ଅଜା କହିଲେ, ''ନାଇଁରେ ନଟ, ଦେଖିବା ଲୋକ ଖାଲି ଘଡ଼ିଏ ଅନେଇ ଚୁପ୍ ରହିଯିବ ନାହିଁ । ଏମିତି କାମ କରିବା ଯେ ଦେଖିବା ଲୋକ ଛାଁକୁ କହିବ – କି ଦେଖିଲା ଆଜ ନେତ୍ର !'' ଅଜାଙ୍କ କହିବା ଢଙ୍ଗ ଓ ମୁଖଭଙ୍ଗୀକୁ ଲକ୍ଷ୍ୟକରି ସମସ୍ତେ ଆନନ୍ଦରେ ହସିଉଠିଲେ ।

ଉପନିର୍ଦ୍ଦେଶକ, ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ
ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ,
ଓଡ଼ିଶା, ଭୁବନେଶ୍ୱର

# ପାଠରେ ରହିଛି ସବୁ

ଶ୍ରୀ ଅଶୋକ କୁମାର ମହାନ୍ତି



ଝୁମୁରୁ ଝାଇଁ, ଝୁମୁରୁ ଝାଇଁ
ପାଠ ପଢ଼ିଗଲେ ଆମରି ଆଇ
ଆଇ ଧରିଥିଲେ ମୋ'ଛବି ବହି
ବହିରେ ଲାଗିଛି ମନ,
ଅଜା ଆଇ ଦୁହେଁ ନାତି ଟୋକା ପାଖେ
ହେଉଛନ୍ତି ଟିଉସନ ।

ନାତି ପଚାରୁଛି କହିଲ ଅଜା
ନକହି ପାରିଲେ ଦେଖିବ ମଜା
ଆଖି ଥାଇ ଅନ୍ଧ କିଏ ?
ଅଜା କହୁଛନ୍ତି ''ଦୂର୍ ଟୋକା
ତୋଅଠାରୁ କେହି ନାହିଁ ତ ବୋକା
ଏମିତି କି କଥା ଥାଏ ।''

ପଢ଼ିଲେ ଏଥର ଚାଲାଖ ଆଇ
ପାନଖିଲେ ନେଇ ପାଟିରେ ଦେଇ
କହିଲେ କହିବି ମୁହିଁ,
''ଅପାଠୁଆ ଆଉ ମୂରୁଖ ଯିଏ
ଆଖି ଥାଉ ଥାଉ ଅନ୍ଧ ସିଏ
ଠିକ୍ ହେଲା ନାଁ ନାହିଁ ?''

ଅଜା ପଚାରିଲେ, କେମିତି ହେଲା
ଇଏ ଗୋଟେ କୋଉ କଥାରେ ଭଲା
ମୂରୁଖ କଅଣ ଅନ୍ଧ ?
ହସିଦେଇ ଆଇ କହିଲେ ଏଥର
ଖୋଲି ଦେବି ଏବେ ତମରି ଗୁମର
ପେଡ଼ି ପୋଟଳିକୁ ବାନ୍ଧ ।

## ଆଇଙ୍କ ବର୍ଣ୍ଣନା

ଅଜା ଯାଇଥିଲେ ଭୁବନେଶ୍ୱର
ନୂଆ ନୂଆ ଧରି ଆଇ ସାଥିର
ଦେଖି ନୂଆ ରାଜଧାନୀ,
ଫେରିଲା ବେଳକୁ ସିଧା ଉଠିଗଲେ
ଯେମିତି ଗାଡ଼ିରେ ବସି ଆସିଥିଲେ
ରଂଗ ରଖିଥିଲେ ଚିହ୍ନି ।

ଆଈଥିଲେ ବୋଲି ଫୁଟାଣି ମାରି
ପଚାରିଲେ ନାହିଁ ଥରେ କାହାରି
ପଛରେ ପାରିଲେ ଜାଣି,
ପଢ଼ିପାରିଲେନି ନାଆଁକୁ ବୋଲି
ରଂଗ ଦେଖିସିନା ଚଢ଼ିଲେ ଖାଲି
ମଝିରୁ ଫେରିଲେ ପୁଣି ।

ପଢ଼ି ପାରିଲେନି ନାଆଁକୁ ବୋଲି
ଆଈ ଆଗଟାରେ ହେଲେ କାଇଲି
କହିଲେ ପଚାରି ଆଈ
ଆଖି ଥାଉ ଥାଉ ଅନ୍ଧ ପରିକା
କାମଟି ହେଲା ନା ନାହିଁ ??

ମହାଜନ ପାଖେ ଏବେକୁ ଏଇ
ଅଜା ଯାଇଥିଲେ ଉଧାର ପାଇଁ
ଟିପ ମାରିଥିଲେ ଆଣି
ପଚାଶ କାଗାରେ ପାଞ୍ଚ ଶହ ଲେଖି
ସୁଧ ଓ ଅସୁଲ ସବୁତକ ଯୋଖି
ମହାଜନ ନେଲା ପୁଣି ।

## ଏବେ ପାଠରେ ମନ

ସେହି ଦିନଠାରୁ ଅଜା ଓ ଆଈ
ଲାଗିଗଲେ ପାଠ ପଢ଼ିବା ପାଇଁ
ଜାଣିଲେ ପାଠର ଗୁଣ,
ପାଠ ବିନା ଏଇ ଦୁନିଆଁରେ ଆଜି
କିଛି ହେଲେ ଟିକେ ପାରିବନି ବୁଝି
ବଞ୍ଚିବା ହେବ କଠିନ ।

ଅଜା ଆଈଙ୍କର ଯୁଗ ତ ନାହିଁ
ଏବେକାର ବେଳ କାଳକୁ ଚାହିଁ
ଆଜିର ଯେତେକ ପିଲା,
ପାଠ ନପଢ଼ିଲେ ମଣିଷରେ ହୀନ
ପଶୁଙ୍କ ସାଥିରେ କରିବେ ସମାନ
ସବୁ ଯେତେକ ଝାମେଲା ।

ସରକାରଙ୍କର ଆଜିର ଡାକ
ସାକ୍ଷର ହେବେ ସବୁରି ଲୋକ
ମୂରୁଖ ରହିବେ ନାହିଁ
ପାଠୁଆ ହୋଇଲେ ଦେଶର ଲାଗି
ପ୍ରଗତିରେ ସିନା ହୋଇବେ ଭାଗୀ
ପିଲାଠାରୁ ବୁଢ଼ା ନେଇ ।

## ଆସ ପାଠ ପଢ଼ିବା

ଝୁମୁରୁ ଝାଇଁ, ଝୁମୁରୁ ଝାଇଁ
ଚାଲଯିବା ପାଠ ପଢ଼ିବା ପାଇଁ
ପାଠରେ ରହିଛି ସବୁ
ଆଖି ଥାଉ ଥାଉ ହେବ ବାଟବଣା
ପାଠ ନପଢ଼ିଲେ ମଣିଷରେ ଗଣା
ହୋଇ ପାରିବନି ବାବୁ ।

ପ୍ରଫୁଲ୍ଲ ନଗର, ଜଗନ୍ନାଥପୁର,
ଭଦ୍ରକ - ୭୫୬୧୦୦

# ଆମ ଗାଁ ହସିବ

ପ୍ରଫେସର (ଡକ୍ଟର) ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର



ଶରଧାପୁର ଗାଁରେ ଦନେଇ ଦାସଙ୍କୁ ସମସ୍ତେ ମାନନ୍ତି । ଗାଁର ବଡ଼ ବଡ଼ଙ୍କର ସେ ଆଦରର ମଉସା ଏବଂ ସାନ ସାନଙ୍କର ଅଜା ବା ଜେଜେ । ଗାଁର ହାନି, ଲାଭ, ମାଲି ମକଦ୍ଦମା, ଯାନି ଯାତରା ବିବାହ ବ୍ରତ ସବୁଥିରେ ତାଙ୍କର ମତ ଲୋଡ଼ାଯାଏ । ସନ୍ଧ୍ୟା ହୋଇଗଲେ ଗାଁ ଯାକର ପିଲାବୁଢ଼ା ସମସ୍ତେ ତାଙ୍କୁ ଘେରି ଭାଗବତ ଟୁଙ୍ଗି ପିଣ୍ଡାରେ ବସି ଯାଆନ୍ତି । ସେଠାରେ ଦନେଇ ମଉସା କଥାର ପସରା ମେଲାଇ ଦିଅନ୍ତି । ଢିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ କଥାପଡ଼େ । ସମସ୍ତେ ସେଥିରେ ଭାଗ ନିଅନ୍ତି ।

ଦିନକର କଥା । ସେଦିନ ଭାରି ଶୀତ ପଡ଼ିଥାଏ । ଦିହହାତ କୋଇ ମାରି ଯାଉଥାଏ । ଶୀତ ଦାଉରୁ କଥା ଜମୁନଥାଏ । ଶେଷକୁ ମଉସା ଥରି ଥରି କହିଲେ- 'ହଇରେ ପିଲାଏ, କିଛି ଶୁଖିଲା କାଠ କି ଡାଳ ଆଣ, ଧୁନି ଲଗାଇବା ଆଉ ଟିକିଏ ଶୀତରୁ ରକ୍ଷା ପାଇବା ।

ମଉସାଙ୍କ ପାଟିରୁ କଥା ନସରୁଣୁ, ବାୟା, ଚଗଲା, ବଳିଆ, ଇସ୍‌ମାଇଲ୍ ଆଉ ଯୋଶେଫ୍ ଦଉଡ଼ା ଦଉଡ଼ି ହୋଇ ଚାରି ଦିଗକୁ ଖେଦିଗଲେ । ହେଲେ କିଛି ସମୟପରେ ଚାରି ଦିଗକୁ ମାଡ଼ି ଯାଇଥିବା ପାଞ୍ଚଜଣଯାକ ମୁହଁ ଶୁଖାଇ ଖାଲି ହାତରେ ଫେରି ଆସିଲେ ।

ବାୟା କହିଲା- ବୁଝିଲ ଜେଜେ, ରାତି ହେଲାରୁ କେହି ଘରୁ କାଠ ଦେବାକୁ ରାଜି ହେଲେ ନାହିଁ । ଭାବିଲୁ ଗାଁ ମୁଣ୍ଡ ବରଗଛରୁ ଶୁଖିଲା ଡାଳ ଆଉ ପତ୍ର ନେଇ ଆସିବୁ । ଦେଖିଲା ବେଳକୁ ସେ ପୂରା ଲଣ୍ଡା, ଖଣ୍ଡିଏ ହେଲେ ଡାଳ ବି ନାହିଁ ।

ଇସ୍‌ମାଇଲ୍ କହିଲା- ଅଜା ! ତୁମକୁ ନପଚାରି ଆରପଟ ଜାମୁ ଗଛତ କାଟି ବିକି

ଦେଇଛନ୍ତି । ନଈବନ୍ଧ ଉପର ଗଛକୁତ ଡାଳ କାଟି କାଟି ଶେଷ କରି ଦେଲେଣି । ସେଥିପାଇଁ ବଢ଼ି ହେଲେ ନଈବନ୍ଧ ଅତଡ଼ା ଖାଉଛି । ଆଉ ତୋଟା ଆମ୍ବଗଛ କଥାତ ନକହିଲେ ଭଲ ।

ତୁମେ ଝିଅ ଘରକୁ ଚାଲିଯିବା ସମୟରେ ମକଦମ କଥାରେ ପଡ଼ି ଭୋଜି କରିବା ପାଇଁ ଗଛଗୁଡ଼ିକୁ ଋଙ୍ଗ ଋଙ୍ଗ କରି କାଟି କଟକୀ କାଠ ବାଲାକୁ ବିକି ଦେଲେ । ଏବେ ହାଟୁଆ, ବାଟୁଆ ଖରାରେ କେତେ ହୀନସ୍ତା ହେଉଛନ୍ତି । ଯୋଶେଫ୍ କହିଲା- ବୁଝିଲ ଜେଜେ ! ମୁଁ ଯେତେବେଳେ ମନା କଲି ସମସ୍ତେତ ଭୋଜି ନିଶାରେ ଥିଲେ, ମୋ'କଥାକୁ କେହି ଶୁଣିଲେ ନାହିଁ । ଏ ଅବସ୍ଥାରେ ଶୁଖିଲା କାଠ ଖଣ୍ଡିଏ ଧୁନି ଜାଳିବା ପାଇଁ କେଉଁଠୁ ମିଳିବ ?

ଏଥର ଦନେଇ ମଉସା କହିଲେ- ଦେଖିଲ, ହାତ ପାଖରେ ଯେଉଁ ଶୁଖିଲା କାଠ ମିଳିବା କଥା ସେ ଆଜି ସାତ ସପନ ହେଲାଣି । ସେଦିନ ପରା ଜଙ୍ଗଲବାବୁ କହୁଥିଲେ, ଆମପାଇଁ ଆଗକୁ କେଡ଼େ ବିପଦ ମାଡ଼ି ଆସୁଛି । ବେଳ ଥାଉ ଥାଉ ଆମକୁ ସାବଧାନ ହେବାକୁ ପଡ଼ିବ ।

ଯୋଶେଫ୍ କହିଲା- ବୁଝିଲ ଜେଜେ, ମୋ ଅଜା ଗୋରା ସାହେବ ପାଖେ କାମ କରୁଥିଲେ । ସେ କହୁଥିଲେ ଯେ ଗାଁ ଚାରିପଟେ ବଡ଼ ବଡ଼ ଗଛ ଲଗାଇଲେ ଘରସବୁ ଝଡ଼ ଦାଉରୁ ରକ୍ଷା ପାଇ ପାରିବ ।

ଏଥର ପୁରୋହିତ ବୁଢ଼ା ନାସ ଟିକିଏ ଶୁଙ୍ଘି କହିଲେ- ଆରେ ପିଲେ ଦିନଥିଲା ଆମ ଗାଁ ଚାରିପଟେ ପୂରା ଜଙ୍ଗଲ ଥିଲା । ଆଉ ଗଛଗୁଡ଼ାକ ପରା ଆମ ଗାଁକୁ ଝଡ଼ ବର୍ଷାରୁ ଚକ୍ର ଆବୁଆଳ କଲା ପରି ରକ୍ଷା କରୁଥିଲା । ଏହି ଗଛଗୁଡ଼ାକ କାଟି ଦେଲାରୁ ଦେଖୁନ ଆର ସାହିର ଘରଗୁଡ଼ିକ ଗତ ସାଲ ଝଡ଼ରେ ଭାଙ୍ଗିଗଲା ।

କଲେଜ ପଢୁଆ ରାମ କହିଲା- ବୁଝିଲ ଅଜା ! ଆମ ଦେହପାଇଁ ଯେଉଁ ଅମ୍ଳଜାନ ଦରକାର ତାକୁ ଏହି ଗଛ ସବୁ ଯୋଗାଇ ଥାଏ । କଳ କାରଖାନାରୁ ଆଉ ଗାଡ଼ିମାନଙ୍କରୁ ବାହାରୁ ଥିବା ଧୂଆଁ ଗୁଡ଼ାକୁ ଅଟକାଏ । ଏବେ ଗଛ ସବୁ କମିଗଲାରୁ ବିଷାକ୍ତ ବାଷ୍ପ ବେଶି ହେଲାଣି । ଗରମ ଦିନକୁ ଦିନ ଅଧିକରୁ ଅଧିକ ହେଲାଣି । ନଈଗୁଡ଼ାକରେ

ବାଲି ଭର୍ତ୍ତି ହୋଇ ଯାଉଅଛି । ପାଣିର ଅଭାବ ହେଉଅଛି । ଦିନ ଆସିବ, ପାଣି ମିଳିବ ନାହିଁ । ଜମିଗୁଡ଼ାକ ମରୁଭୂମି ହୋଇଯିବ । ଇସ୍‌ମାଇଲ୍ ମିଆଁ ଦାଢ଼ି କୁଣ୍ଡାଇ କରି କହିଲା, ବୁଝିଲ ମଉସା ! ଜଙ୍ଗଲ ଉଜେଇ ଗଲାରୁ ଜାଳ ଖଣ୍ଡିଏ ମିଳୁନି । ପାଖ ଝରଣାରୁ ପାଣି ଶୁଖିଗଲାଣି । ଛେଳି ଚରାଇବାକୁ ଜଙ୍ଗଲ ନାହିଁ ! ଗାଈମାନଙ୍କ ପାଇଁ ଭଲ ଘାସ ପାଇବା ସପନ ହେଲାଣି । ଚୋରାରେ କାଠ ଚାଲାଣ ହେଲାଣି । ଦି'ପଇସା ପାଇବା ପାଇଁ ଆମେ ନିଜ ପାଇଁ ନିଜେ ଗାତ ଖୋଳିଲୁ । ଦାନ୍ତ ଘଷିବା ପାଇଁ ଦାନ୍ତକାଠିଟିଏ ପାଇବା କାଠି କର ପାଠ ହେଲାଣି । ଚଉକାଠ, କବାଟ ଆଉ ଝରକା ପାଇଁ ଭଲ କାଠ ଖଣ୍ଡିଏ ମିଳୁନି ।



ଦାମ ସାହୁ କହିଲା, ମଉସା, କିଏ କେବେ ଭାବିଥିଲା ଯେ ମୁଣ୍ଡିଆରୁ ଗଛତକ କାଟିଦେଲେ ଏତେ ବିପଦ ମାଡ଼ି ଆସିବ ! ସେତେବେଳେ ଟିକିଏ ଭାବିଥିଲେ ଆଜି ଆମ ପାହାଡ଼ ତଳ ସୁନା ଜମି ଗୁଡ଼ିକରେ ବାଲି ଚରି ନଥା'ନ୍ତା । ଟିକିଏ ବରଷା ହୋଇଗଲେ ଅଉଲ୍ ଜମିଗୁଡ଼ିକ ପୋତି ହୋଇ ତଇଲା ଜମି ପାଲଟି ଯାଉଛି । ଫସଲ ଅମଳ କମି ଯାଉଛି । ଶଗଡ଼ପାଇଁ ଭଲ କାଠ ଆଉ ବାଉଁଶ ମିଳୁନାହିଁ । କାଠ ଅଭାବରୁ

ଭଲ ଲୁଆଜିଟିଏ ହୋଇ ପାରୁନାହିଁ । ଗଛ କଟା ହୋଇ ଜଙ୍ଗଲ ଉଜେଇଗଲାରୁ ଜୀବଜନ୍ତୁଙ୍କ ବଂଶ ଲୋପ ପାଇବାକୁ ବସିଲାଣି ।

ଏକଥା ଶୁଣି ଜଗୁ କବିରାଜେ କହିଲେ, ବୁଝିଲ ପିଲେ ! ଗାଁରେ ରୋଗ ବଇରାଗ ହେଲେ, ମୁଁ ଏଇ ବଣରୁ ଚେର ମୂଳି ଆଣି ସେଥିରୁ ଔଷଧ ତିଆରି କରି ଲୋକଙ୍କୁ ଭଲ କରୁଥିଲି। ଏବେ ମୁଣ୍ଡିଆତ ଲଣ୍ଡାହେଲାଣି । ଜଙ୍ଗଲତ ଦିନକୁ ଦିନ ଉଜେଇ ଯାଉଛି । ହରିଡ଼ା, ବାହାଡ଼ା, ଅଁଳା, ଶତାବରୀ ଆଉ ପାତାଳ ଗରୁଡ଼ ଚେର ମୂଳ କାହୁଁ ମିଳିବ ଯେ ଔଷଧ ତିଆରି ହେବ ? ଏମିତି ବେଳ ଆସିବ ଯେ ମଣିଷ ମଲାବେଳକୁ କୋକେଇରେ ନେବା ପାଇଁ ବାଉଁଶ ମିଳିବ ନାହିଁ, ଆଉ ଶବ ପୋଡ଼ିବା ପାଇଁ କାଠ ସାତ ସପନ ହେବ । ଏସବୁ ନିଜ କଲା କର୍ମର ଫଳ । ନିଜେ ଭୋଗିବ ନାହିଁ ତ ଆଉ କିଏ ତମ ପାଇଁ ଭୋଗିବ ?

ଏଥର ଦନେଇ ମଉସା କହିଲେ, ଆରେ ଦେଖୁନ, ଆରସାଲେ କେତେବଡ଼ ଝଡ଼ ବତାସ ! ଆମ ରାଜ୍ୟର କେତେ କ୍ଷତି ହେଲା ! କେତେ ଲୋକ ମଲେ । କେତେ ପିଲା ଅନାଥ ହେଲେ । କେତେ ଘର ଭାଙ୍ଗିଗଲା ତାର ହିସାବ ନାହିଁ । ଯଦି ଗଛ ଥାଆନ୍ତା ଆମେ ନିଶ୍ଚୟ ଝଡ଼ବତାସ ଦାଉରୁ ରକ୍ଷା ପାଇଥାଆନ୍ତୁ । ଗଛ କାଟିଦେଲାରୁ ବରଷା କମି ଯାଉଛି । ଗଛସିନା ପାଣି ରଖିଲେ ଭୂଇଁ ଓଦା ରହନ୍ତା କିନ୍ତୁ ଗଛ ନଥିବାରୁ ବର୍ଷା ନହେବାରୁ ଭୂଇଁ ଶୁଖି ଯାଉଛି । ପ୍ରତିବର୍ଷ ମରୁଡ଼ି ହେବାର ସମ୍ଭାବନା ରହୁଛି । ତୁମେ ସବୁତ ଜାଣିଛ ଯେ ଆମ ଜଗନ୍ନାଥ ମହାପ୍ରଭୁ ଗଛ ବା ଦାରୁରେ ତିଆରି । ସେ ହେଉଛନ୍ତି ଦାରୁବ୍ରହ୍ମ । ସେ ପରା କହୁଛନ୍ତି- ମୁଁ ହେଉଅଛି ଗଛ । ଗଛ ଲଗାଇଲେ ଓ ଗଛର ଯତ୍ନ ନେଲେ ତୁମେମାନେ ଭଲରେ ରହିବ ଏବଂ ଦେଶର ଉନ୍ନତି ହେବ । ମତେ ଲାଗୁଛି ଆମେ ଯଦି ଏତିକି ବେଳୁ ଜାଗତିଆର ନହେବା, ବେଳ ଆସିବ ଯେତେବେଳେ ରଥ ପାଇଁ କାଠ ମିଳିବ ନାହିଁ । ନବକଳେବର ପାଇଁ ଦାରୁର ଅଭାବ ପଡ଼ିବ । ଯଦି ଏହିପରି ଗଛ କଟାଯାଏ, ଜଙ୍ଗଲ ଉଜେଇ ଯାଏ, ମଣିଷ ଜାତି ବଞ୍ଚିବା ଅସମ୍ଭବ ହେବ । ଯଦି ଆମେ ଏତିକି ବେଳୁ ସାବଧାନ ନହେବା, ତେବେ ଆମ ପୁଅନାତିମାନେ ପରେ ଆମକୁ ଗାଳିଦେବେ । କାରଣ ଆମ ବାପ ଅଜାମାନେ ଯେଉଁ

ଗଛ ଲଗାଇଥିଲେ ତାକୁତ କାଟିକରି ଶେଷକଲେ, ଆମ ପୁଅନାତିଙ୍କ ପାଇଁ କ'ଣ ରଖିଗଲେ ? କେବଳ ଦୁଃଖ ! ବେଳ ଅଛି ଟିକିଏ ଚିନ୍ତାକର ।



ମଉସାଙ୍କ କଥା ଶୁଣି ଗାଁର ସରପଞ୍ଚ କହିଲେ, ''ବୁଝିଲ ମଉସା, ଏଥର ଭାବିବାର ବେଳ ସରିଗଲା । କାମରେ ଦେଖାଇବା ପାଇଁ ଆଗେଇ ଆସିବାକୁ ହେବ । ତୁମେ ଯାହା କହିବ, ଆମେ ସମସ୍ତେ ମାନିବୁ ଏବଂ ଯାହା କରିବାକୁ କହିବ ତାହା ନିଶ୍ଚୟ କରିବୁ ।''

ଏଥର ଦନେଇ ମଉସା ଗୋଟିଏ ଖଣ୍ଡିକାଶ କାଶି କହିଲେ, ଶୁଣ ! ଆମର ପ୍ରଥମ କାମ ହେଲା ଯେଉଁ ଗଛତକ ରହିଛି, ତା'ର ଜଗାରଖା କରିବା ଏବଂ ନୂଆ ଗଛ ଲଗାଇବା । ଖାଲି ଗଛ ଲଗାଇଲେ ହେବନାହିଁ; ସେ ଯେପରି ବଢ଼ିବ ସେ ବିଷୟରେ ସଜାଗ ହେବା । ଲଣ୍ଡାପାହାଡ, ରାସ୍ତାକଡ଼, କୋଠଜମି, ସ୍କୁଲହତା, ମଶାଣିଖଣ୍ଡି, ନଈଦାଢ଼, ଦଣ୍ଡା, ପଡ଼ିଆ, ଦେଉଳ, ମସ୍‌ଜିଦ୍, ଗୀର୍ଜାଘର ଓ ପଡ଼ିଆ ଜମିରେ ଗଛଲଗା ଅଭିଯାନ ହେଉ । ପ୍ରତ୍ୟେକ ଲୋକ ତାଙ୍କ ଘରକୁ ନୂଆ ବୋହୂଟିଏ ଆସିଲେ ପିଲାଟିଏ ଜନ୍ମ

ହେଲେ, ତା' ନାଁରେ ଗୋଟିଏ କି ଦୁଇଟି ଗଛ ଲଗାନ୍ତୁ ଓ ତାକୁ ଜଗାରଖାର ଦାୟିତ୍ୱ ନିଅନ୍ତୁ । ଦେଖିବ, ବେଳ ଆସିବ ଆମ ଧରିତ୍ରୀ ମାଆ ଗୋଟିଏ ନେଳି ଶାଢ଼ୀ ପିନ୍ଧିବ । ଫୁଲ ଫଳରେ ଆମ ଗାଁ ହସି ଉଠିବ । କେତେ ଜାତିର ଚଢ଼େଇ ଆସିବେ । ପଶୁ ପକ୍ଷୀରେ ଭରପୂର ହୋଇଯିବ ।

ଲୋକ ବଢ଼ିଲାରୁ ଆମେ ଗଛ ଅଧିକ କାଟିଲୁ । ତେଣୁ ଆମେ ସମସ୍ତେ ଚିନ୍ତା କରିବା ଯେପରି କେହି ଅଧିକ ପିଲା ସଂସାରକୁ ନଆଣିବା । ଗୋଟିଏ କି ଦୁଇଟି ହେଲେ ଯଥେଷ୍ଟ ହେବ । ପୁଅ ଆଉ ଝିଅ ଭିତରେ କିଛି ଫରକ ନାହିଁ । ସେଥିପାଇଁ ଗ୍ରାମ ସଭାଡାକି ଏ ବିଷୟରେ ବିଚାର କରାଯାଉ ଏବଂ ସମସ୍ତଙ୍କୁ ବୁଝାଇ ଦିଆଯାଉ ।

ଏହି ସମୟରେ ନାକଫୋଡ଼ି ବାରିକ ହାତଯୋଡ଼ି କହିଲା, ମଉସା, ଟିକିଏ ମୋ ଗୁହାରି ଶୁଣିବା ହେଉ । ଆମେ ଯେତିକି ଟିପବାଲା ଅଛୁ ସବୁକଥାରେ ଟିପ ଦେବାକୁ ଭଲ ଲାଗୁନି । କାଲି ମୋ ପୁଅ ଜଗୁ କଲେଜରେ ପଢ଼ିବାପାଇଁ ଗୋଟିଏ ନାମଲେଖା ଫରମ ଆଣି ମୋତେ ଦସ୍ତଖତ କରିବାକୁ କହିଲା । ମୁଁ ଟିପ ଦେବାକୁ ବାହାରିଲାରୁ ସେ ମୋତେ ବାରଣ କଲା । କହିଲା, ''ବାପା ! ତୁମେ ଟିପ ଦେଲେ ମୋ ସାଙ୍ଗସାଥୀ ଫରମ ଦେଖିଲେ ହସିବେ । ମୋତେ ଲାଜ ଲାଗିବ ।'' ସେ କଥାଟା ମୋ ମନକୁ ଭାରି ବାଧୁଛି । ଭାବୁଛି, ଦସ୍ତଖତ କରିବା ଶିଖିବି । ହେଲେ ଏ ଦରବୁଢ଼ା ବୟସରେ କେଉଁ ସ୍କୁଲରେ ଯାଇ ନାମ ଲେଖାଇବି ? କ'ଣ କରିବି ବୁଝି ପାରୁନି । ପିଲାଦିନେ ପାଠ ନପଢ଼ିଥିବାରୁ ଏତେ କଥା ଶୁଣିବାକୁ ହେଲା । ଟିକିଏ କ'ଣ ଗୋଟେ ବାଟ ବାହାର କର ।

ଏଥର ଦନେଇ ମଉସା ହସି ହସି କହିଲେ, ''ହଇରେ ନାକଫୋଡ଼ି, ପଢ଼ିବାରେ ଲାଜ କ'ଣ ଅଛି । ଏଇ ଦେଖୁନ ମୋ ନାତି ତ ଏତେ ପାଠ ପଢ଼ି ପୁଣି ପାଠ ପଢ଼ିବାକୁ ବାହାରକୁ ଗଲା । କିରେ ଆମ ଗାଁରେ ଯେତେ ପଢୁଆ ପିଲା ଅଛନ୍ତି ସେମାନଙ୍କୁ କହିବା । ସେମାନେ ଟିକିଏ ସମୟ ଦେଲେ ତମେ ଯେତେ ସବୁ ଟିପବାଲା ଅଛ ତମ ସମସ୍ତଙ୍କୁ ପାଠ ପଢ଼ାଇଦେବେ । ଆମ ଗଣି ମାଷ୍ଟ୍ରେ ସେମାନଙ୍କୁ ଟିକିଏ ପଢ଼ାଇବାର ବାଟ ବତାଇ ଦେବେ । ବହି, ସିଲଟ, ଖଡ଼ି ତ ମାଗଣାରେ ପାଇବା । ତୁମ୍ଭମାନଙ୍କର ମନବଳ ଥିଲେ

ଆରେ ଦସ୍ତଖତ କ'ଣ । ଭାଗବତ, ରାମାୟଣ, ଗୀତା, କୋରାନ୍ ଓ ବାଇବେଲ୍ ପଢ଼ି ପାରିବ । ଖବରକାଗଜ ପଢ଼ି ଦେଶ ବିଦେଶର ଖବର ଜାଣି ପାରିବ । ନିଜ ପାଇଁ ଦରଖାସ୍ତଟିଏ ଲେଖି ପାରିବ ।

ତୁମେ ଏହି ପାଠ ପଢ଼ା କଥା ଉଠାଇଲାରୁ ମୁଁ ଆଉ ଗୋଟିଏ କଥା ଭାବୁଛି । ତୁମ୍ଭେମାନେ ଏକା ପଢ଼ିଲେ ହେବନାହିଁ । ମୋ ନାତୁଣୀମାନେ ବି ଦି'ଅକ୍ଷର ଶିଖିବା ଉଚିତ । ଆମ ଗାଁରେ ଯେତେ ଶିକ୍ଷିତା ଝିଅ, ବୋହୂ ଅଛନ୍ତି, ଯଦି ତୁମ୍ଭେମାନେ ରାଜି ହୁଅନ୍ତ, ତେବେ ସେମାନେ ସେମାନଙ୍କର ମାଆ, ମାଉସୀମାନଙ୍କୁ ବି ପାଠ ପଢ଼ାଇ ଦିଅନ୍ତେ । ତାଙ୍କୁ ଆଉ କେହି ମୂରୁଖ ବୋଲି କହି ପାରନ୍ତେ ନାହିଁ । ସେମାନେ ଦି'ଅକ୍ଷର ଶିଖିଲେ କେତେ କଥା ଜାଣି ପାରନ୍ତେ, ଘରର ଉନ୍ନତି ହୋଇପାରନ୍ତା ।

ଯଦି ଆମେ ସମସ୍ତେ ଏକାଠି ହୋଇ, ଏକାମନ ହୋଇ ଏହିସବୁ କାମ କରିବା ତେବେ ଦେଖିବ କେତେମାସ ଭିତରେ ଆମ ଗାଁରୁ ଟିପଦେବାବାଲା ଉଭେଇ ଯିବେ । ଗାଁଟି ଫୁଲଫଳରେ ଭରିଯିବ । ଜାଳେଣିକାଠର ଅଭାବ ରହିବ ନାହିଁ ଝରଣାରୁ ପାଣି ଶୁଖିବ ନାହିଁ ମରୁଡ଼ିର ଡର ନଥିବ । ପିଲା ସଂଖ୍ୟା କମିଗଲେ ଘରେ ସମସ୍ତେ ଭଲରେ ରହିବେ । ଫଳରେ ସମସ୍ତଙ୍କ ମନରେ ହସଖୁସି ଲାଗିରହିବ ଏବଂ ଆମ ଗାଁ ଶରଧାପୁର ହସି ଉଠିବ । ଯଦି ତୁମେ ସମସ୍ତେ ମୋ କଥାରେ ରାଜି, ତାହା ହେଲେ କାଲିଠାରୁ ଏ କାମ ଆରମ୍ଭ ହେବ ।

ଦନେଇ ଦାସଙ୍କ କଥା ନସରୁଣୁ ସମସ୍ତେ ଏକ ସ୍ୱରରେ ହରିବୋଲ ପକାଇ କହି ଉଠିଲେ, ଆପଣ ଯାହା କହିଲେ ସେଥିରେ ଆମେ ରାଜି । କାଲିଠାରୁ ଆମେ ଆପଣ ଯେପରି କହିବେ ତାକୁ ମାନି କାମ କରିବୁ । ରାତି ବେଶି ହୋଇଥିବାରୁ ସମସ୍ତେ ଯେଝା ଘରକୁ ଯିଏ ଫେରି ଯାଇଥିଲେ ।

**କାର୍ଯ୍ୟକ୍ରମ ସଂଯୋଜକ,**
**ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର**

# ସବୁ ହେବ ସେଇ ହାତରେ

ରମେଶ ଚନ୍ଦ୍ର ଭଞ୍ଜ



ମହା କାରିତିକ ଧରମ ମାସରେ ଚୂରି ଦେଇ ପଞ୍ଚୁ ମୁରୁଜ,
ଚଉରା ମୂଳରେ ଆଙ୍କି ଦେଇଗଲ ଦଶଦିଗପାଳ ସୂରୁଜ,
କାଳିଆ, ବଳିଆ ମୂରତି,
ଲେଖାରେ- ରେଖାରେ ଚାହୁଁ ଚାହୁଁ ହେଲା ଚଉତରା ସାରା ଭରତି ।

ଆକାଶଦୀପର ଆଟିକା ଉପରେ ଖଡ଼ି ଘୋରି ଦେଲ ଧଉଳି,
ତାଉରେ ଆଙ୍କିଲ ପଦୁଅଁ ପାଖୁଡ଼ା ରଙ୍ଗ ଗଲା ନାହିଁ ମଉଳି,
ଦୂରକୁ ଦିଶିଲା ଝଟକି,
ଚାହିଁଦେଲା ଯିଏ, ନଜର ତାହାର ଥରଟିଏ ଗଲା ଅଟକି ।

ମଗୁଶିର ମାସ ମାଣବସା ଲାଗି ବୁଧବାର ସାରା ରାତିଟା,
ଉଜାଗର ରହି, ଚିତା ପକାଇଲ ହସିଲା ଚଟାଣ ଛାତିଟା,
ଆଲପନା, ଝୋଟି, ଗୋଲକ,
ଚରଣ ଯୁଗଳ ଆଙ୍କୁଥିଲାବେଳେ ହଲି ଯାଉଥିଲା ନୋଲକ ।

ଗାଈ ଗୋବରରେ ପାଣି ଗୋଳିଦେଇ ଲିପିଦେଲ ଖଳା ବାଡ଼ିଟା,
ଖଡ଼ିକା ଝାଡୁରେ ଖରକି ଆଣିଲ ଅଳିଆ, ଅସନା ଭାଡ଼ିଟା,
ଓଳେଇଲ ଘର, ଦୁଆର,
ତାହାରି ଭିତରେ ଫୁଟି ଉଠୁଥିଲା ଅନେକ ଅକ୍ଷର ଜୁଆର ।



ଆରିଷା, କାକରା, ଚିତୋଉ, ଚକୁଳି, ଖୁଆମଣ୍ଡା, ଛୁଞ୍ଚିପତର,
ଗଜା, ମାଲପୁଆ, ତାଡ଼ିଆ, ଜିଲିପି ଜର ଜର ସିରା ବତର,
କେତେ ଜାତି ଭୋଗ ଦରବ,
ଗଢ଼ିଦେଲାବେଳେ, ବଢ଼ି ଯାଉଥିଲା ବାରମାସେ ତେର ପରବ ।

ଅକ୍ଷର କେତେଟା ଲେଖିହେବ ନାହିଁ ସତେ କ'ଣ ସେଇ ହାତରେ !
ଏଇ କଥା ପାଇଁ ପଡ଼ିଯାଉଛ ଲାଜ ଲତପତ କାତରେ !
ଶିଖିବାରେ କ'ଣ ସରମ !
'ଶିଖି ଚାଲିଥିବ ଜୀବନ ତମାମ' - ସେଇତ ମାନବ ଧରମ !

କାମରେ ଧନ୍ଦାରେ ନିରତ ଲେଖୁଛ ଅନେକ ଅଜଣା ଅକ୍ଷର,
ଅକ୍ଷର ଲେଖିବା ବଡ଼ କଥା ନୁହେଁ, କାମଟିଏ ଏକ ପକ୍ଷର,
ନିତି ନିତି ଦେଇ ଘଡ଼ିଏ,
ନଜର ପକେଇ ନିଜର କରିଲେ, ଛିଡ଼ିବନି ମୁଣ୍ଡା ଖଡ଼ିଏ ।

କିଏ ଆଗ, କିଏ ପଛରେ ରହିବ, କେଉଁ ନାମ କିଏ ବହିଛି,
ଶିଖିବାକୁ ବେଶି ଦିନ ନେବନାହିଁ, ସେ ସବୁ ବହିରେ ରହିଛି,
ଭଲକରି ଥରେ ଜାଣିଲେ,
ଅପାସୋରା ହୋଇ ମନରେ ରହିବ, ଅନୁରାଗ ଟିକେ ଆଣିଲେ ।

ଅଳପ ଦିନରେ ବହି ପଢ଼ିଯିବ, ପଢ଼ିବ ଚିଟାଉ, ପୁରାଣ,
ହିସାବ-କିତାବ ମଥାରେ ପଶିଲେ ତୁଟିଯିବ ପାଠ ଡରାଣ,
ଜୀବନଟା ଯିବ ଆଗେଇ,
ଅଡୁଆ-ତଡୁଆ ଆଡ଼ ହୋଇଯିବ ସବୁକାମ ଯିବା ବାଗେଇ ।

ଯେଉଁ ହାତେ ଘର ସଂସାର ଗଢ଼ିଛ, ସରଗ କରିଛ ମରତ,
ସେଇ ହାତେ ପରା ଗୁଡ଼େଇ ଦେଇଛ ସୁଖଦ, ସୁଦଶା ବରତ,
ସବୁ ହେବ ସେଇ ହାତରେ,
କଥା ଅଛିପରା – 'ଆପଣାର ହାତ ଅଟଇ ଜଗତନାଥରେ' ।

ସାମନ୍ତରାପୁର (ବୁଢ଼ୀବଗିଚା)
ଖୋରଧା- ୭୫୨୦୫୫

# ସମାଜ ଚେତନା ବାହିନୀ : ଏକ ଅନୁଭୂତି

ଶ୍ରୀ ଭୁବନାନନ୍ଦ ତ୍ରିପାଠୀ



କେଉଁଝର ଜିଲ୍ଲାର ଚମ୍ପୁଆ ସବ୍‌ଡିଭିଜନ ଭିତରେ ବଲାଣି ନାଁରେ ଗାଁଟିଏ । ଗାଁ ପାଖରେ ଗୋଟିଏ ଲୁହାପଥର ଖଣି । ଖଣିଟି ଗଲା ଚାଳିଶ ବର୍ଷ ଧରି ଚାଲିଛି । ଖଣିକୁ ନେଇ ଗୋଟିଏ ଅଲଗା କଲୋନୀ ଗଢ଼ି ଉଠିଛି । ଏହି ଖଣି ସହରରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ତଥା ଓଡ଼ିଶା ବାହାରୁ ବିହାର, ବଙ୍ଗଳା ଏବଂ ଉତ୍ତର ପ୍ରଦେଶ ଅଞ୍ଚଳରୁ ଲୋକମାନେ ଆସି ବାସ କରୁଛନ୍ତି । ଖଣି-ସହରର ବାସିନ୍ଦାମାନଙ୍କର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ । ଆଧୁନିକ ଜୀବନର ସମସ୍ତ ସୁବିଧା ଯଥା - ପାଇପ୍ ପାଣି, ଇଲେକ୍ଟ୍ରି ଲାଇନ୍, ପିଚୁ ରାସ୍ତା, ଡାକ୍ତରଖାନା, ଟି.ଭି.,ଟେଲିଫୋନ୍ ସହିତ ବସ୍ - ଟ୍ୟାକ୍ସି ଇତ୍ୟାଦି ଏଠାରେ ଉପଲବ୍ଧ ।

ଏ ସହରର କେତୋଟି ଦୁଃଖ ମଧ୍ୟ ଅଛି । ଏଠି ଲୋକଙ୍କର ଚଳଣି ଖର୍ଚ୍ଚ ବେଶି । ସଉକ୍ କରିବା ପାଇଁ ବେଶି ଖର୍ଚ୍ଚ କରିଥାଆନ୍ତି । ତା' ସହିତ ନିଶା ସେବନ ମଧ୍ୟ ବହୁଳ ପରିମାଣରେ ରହିଛି । ଅନ୍ୟ ପକ୍ଷରେ ନିଜର ଶିକ୍ଷା ଦୀକ୍ଷା ବହୁତ ଅଳ୍ପ । ଏ ଦିଗ ପ୍ରତି ସେମାନଙ୍କର ନଜର ନାହିଁ । ପିଲାମାନଙ୍କର ପାଠପଢ଼ା ପ୍ରତି ମଧ୍ୟ ବାପା-ମା'ମାନେ ଏତେ ଆଗ୍ରହୀ ନୁହଁନ୍ତି । ଫଳସ୍ୱରୂପ ଯୁବକଶ୍ରେଣୀ ଭିତରେ ବେକାର ସଂଖ୍ୟା ବେଶି । ମାତ୍ର ବେଶ ଭୂଷାରେ ଆଡମ୍ବର ଭରପୂର । ଆଉ ବ୍ୟବହାରରେ ଔଦ୍ଧତ୍ୟର ଝଲକ । ଚାକିରି ଶେଷରେ ସଞ୍ଚୟର ପରିମାଣ କମ୍ ରୁହେ । ତେଣୁ ଅବସର ପରେ କେତେକ କର୍ମଚାରୀ ଏ ଜାଗା ଛାଡି ଯିବା ପାଇଁ ନିଜକୁ ପ୍ରସ୍ତୁତ କରି ପାରନ୍ତି ନାହିଁ । ଦଳ ଦଳ ଭିତରେ ଝଗଡ଼ା, ମଦପିଇ ମାତାଲ ହେବା, ଚୋରୀ ନାରୀ ଆଦି ବିଭିନ୍ନ ପ୍ରକାର ଅସାମାଜିକ କାର୍ଯ୍ୟ ଏ ଜାଗାର ନିତିଦିନିଆ ଘଟଣା ।

ଏହି ଖଣି ସହରରେ କିଛି ପରିବର୍ତ୍ତନ ଆଣିବା ପାଇଁ, ଲୋକମାନଙ୍କ ଭିତରେ ଚେତନା ଜଗାଇବା ପାଇଁ ଗୋଟିଏ କ୍ଷୁଦ୍ର ସଂଗଠନ ଗଢ଼ି ଉଠିଥିଲା । ତା'ର ନାଁ ଥିଲା- ''ସମାଜ ଚେତନା ବାହିନୀ'' । ସେହି ଖଣି ସହରରେ ରହୁଥିବା ଜଣେ ଅଧିକାରୀ ଅନ୍ୟ କେତେଜଣ କର୍ମଚାରୀଙ୍କ ସହିତ ଆଲୋଚନା କରି ସ୍ଥାନୀୟ ବିଦ୍ୟାଳୟ ପରିସରରେ ଏହି ସଂଗଠନର ଶୁଭାରମ୍ଭ କରିଥିଲେ । ଯେଉଁମାନେ କର୍ମଚାରୀ ଶ୍ରେଣୀର, ଯୁବକ ହୁଅନ୍ତୁ ବା ମଧ୍ୟବୟସ୍କ, ସେମାନେ ନିଜ ଜୀବନରେ ନିଶା ବର୍ଜନ, ସଞ୍ଚୟ, ପରୋପକାର ଆଦିକୁ ନୀତି ଭାବେ ଗ୍ରହଣ କରିଛନ୍ତି, ସେହିମାନଙ୍କୁ ଏହି ଦଳରେ ସାମିଲ କରାଗଲା । ନିଷ୍ପତ୍ତି ହେଲା, ଆମେମାନ କିଛି କରିବା । ସୀମିତ ସମ୍ବଳ । ସ୍ଥିର ହେଲା ଯାହା କରାଯିବ, ତାହା କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ହେବ । ପ୍ରତ୍ୟେକ ସପ୍ତାହର ଶନିବାର ଦିନ ସନ୍ଧ୍ୟା ୬ଟା ବେଳେ ସଦସ୍ୟମାନେ ସ୍କୁଲଘରେ ଏକତ୍ରିତ ହୋଇ ବିଚାର ଆଲୋଚନା କରିବେ ଏବଂ ସପ୍ତାହ ସାରା ଏହାକୁ କାର୍ଯ୍ୟକାରୀ କରିବେ ।



ପ୍ରଥମେ ଆରମ୍ଭ ହେଲା ସାକ୍ଷରତା କାର୍ଯ୍ୟ । ଏକରୁ ଆରମ୍ଭ ହୋଇ ଦଶଟି ପର୍ଯ୍ୟନ୍ତ କେନ୍ଦ୍ର ଖୋଲିଲା । ମନ୍ଦିର, କ୍ଲବ୍, ମହିଳା ସମିତି ଓ ଖୋଲାଘର ଆଦି ହେଲା ସାମୟିକ

ପାଠଶାଳା । ଶିକ୍ଷକ ହେଲେ ସଂଗଠନର ସ୍ୱେଚ୍ଛାସେବୀ ଛାତ୍ର ହେଲେ ଖଣିର ନିରକ୍ଷର କର୍ମଚାରୀ। ସପ୍ତାହରେ କେବଳ ଗୋଟିଏ ଦିନ ରବିବାର ଦିନ । ସକାଳ, ଦ୍ୱି'ପହର ବା ସଂଧ୍ୟା ସମୟରେ ଏହି ପାଠଶାଳାଗୁଡ଼ିକ ଚାଲିଲା । ସ୍ୱେଚ୍ଛାସେବୀମାନେ ନିଜ ଖର୍ଚ୍ଚରୁ ଏହାକୁ ଚଳାଇଲେ । କାମ ସୁରୁଖୁରୁରେ ଚାଲିଲା । ମୋଟ ପ୍ରାୟ ୧୨୦ ଜଣ ନାଁ ଲେଖାଇଲେ ଏବଂ ବର୍ଷ ଶେଷରେ ଅର୍ଦ୍ଧାଧିକ ଲୋକ ଶିକ୍ଷିତ ହୋଇ ଉଠିଲେ ।

ଦ୍ୱିତୀୟ ପ୍ରୟୋଗ ହେଲା- ''କିପ୍ ଫିଟ୍'' । ପ୍ରତ୍ୟେକ ରବିବାର ସକାଳେ ଖେଳ ପଡ଼ିଆରେ ଅଧା ଘଣ୍ଟାର ବ୍ୟାୟାମ୍ ବ୍ୟବସ୍ଥା । କୋଚ୍ ଓ ଶିକ୍ଷାର୍ଥୀ ଉଭୟେ କର୍ମଚାରୀ । ଲକ୍ଷ୍ୟ ଥିଲା, ଶରୀର ଓ ସ୍ୱାସ୍ଥ୍ୟ ପ୍ରତି ସଚେତନତା। ବିଶେଷ ଭାବେ ନିଶାଗ୍ରସ୍ତ କର୍ମଚାରୀଙ୍କୁ ଏଥିରେ ସାମିଲ କରିବା ପାଇଁ ଲକ୍ଷ୍ୟ ରଖାଗଲା । ଏକ ନୂଆ ଶବ୍ଦର କଳ୍ପନା କରାଗଲା । ନିଶା ସେବନ ନ କରୁଥିବା ଲୋକ ହେଲେ - ''ପିୟୁଷାହାରୀ'' । ଅର୍ଥାତ୍ ଅମୃତ ପାନକାରୀ । ବର୍ଷ ଶେଷରେ ଦେଖାଗଲା, ମୋଟ ନାମଲେଖା ୧୫୦ ଜଣ ଏବଂ ସେଥିମଧ୍ୟରୁ ନିୟମିତ ହେଲେ ମୋଟ ୧୫ ଜଣ ।

ତୃତୀୟ କାର୍ଯ୍ୟକ୍ରମ ହେଲା- 'ମହିଳା ସଞ୍ଚୟ ଯୋଜନାର ପ୍ରସାର' । ପ୍ରତ୍ୟେକ ସଦସ୍ୟ ନିଜ ଆଡୁ ଏହି ଯୋଜନାରେ ସଦସ୍ୟ ହୋଇ ମାସିକ ୫୦ ବା ୧୦୦ ଟଙ୍କା ଜମା କଲେ । ଏ କାମରେ ଜଣେ ଏଜେଣ୍ଟଙ୍କୁ ନିଯୁକ୍ତ କରାଗଲା । ସଦସ୍ୟମାନେ ଚେଷ୍ଟା କରି ଏହି ଯୋଜନାକୁ ପ୍ରସାର କରାଇଲେ । ଦଳଗତ ପ୍ରଚେଷ୍ଟାର ଫଳସ୍ୱରୂପ ଶତାଧିକ ପାଶବୁକ୍ ଖୋଲି ପାରିଥିଲା ।

ଚତୁର୍ଥ ଯୋଜନା ଥିଲା- 'ବରିଷ୍ଠ ନାଗରିକଙ୍କୁ ସମ୍ବର୍ଦ୍ଧନା'। ବରିଷ୍ଠର ସ୍ଥାନୀୟ ବ୍ୟାଖ୍ୟା କରାଗଲା । ଯଥା- ୫୦ ବର୍ଷରୁ ଉର୍ଦ୍ଧ୍ୱ ବୟସ୍କ ବ୍ୟକ୍ତି ନିଜର ପୁଅ କିମ୍ବା ଝିଅର ବିବାହ ସାରିଥିଲେ, ଏହାର ଅନ୍ତର୍ଭୁକ୍ତ ହେଲେ । ସମାଜପ୍ରାଣତା ଜଗାଇବା ପାଇଁ ବରିଷ୍ଠଠାରୁ କନିଷ୍ଠକୁ ଅନୁଭୂତିର ଧାରାକୁ ସ୍ୱତଃ ପ୍ରବାହିତ କରି ସମାଜ ଭିତରେ ଆତ୍ମୀୟତା ଭାବର ବୃଦ୍ଧି କରିବାକୁ ଏମାନଙ୍କୁ ଅନୁରୋଧ କରାଗଲା । ବରିଷ୍ଠ ନାଗରିକର ପରିବାରକୁ ଯାଇ ଗୋଟିଏ ଫୁଲମାଳ ଓ ଗୋଟିଏ ଶ୍ରୀଫଳ ଦେଇ ସମ୍ବର୍ଦ୍ଧନା କରାଗଲା । ଏହା ସହିତ

ଗୋଟିଏ ମାନପତ୍ର ଦେଇ ତାଙ୍କୁ ଅନୁରୋଧ କରାଗଲା ଯେ, ସେମାନେ ସମାଜପାଇଁ ତାଙ୍କ ଆତ୍ମ ବରିଷ୍ଠତାର ନିରନ୍ତର ମାର୍ଗଦର୍ଶନ କରାଇବେ । ଏହାର ସୁଫଳ ମଧ୍ୟ ସ୍ଥାନେ ସ୍ଥାନେ ଦେଖିବାକୁ ମିଳିଲା ।

'ନବାଗତଙ୍କୁ ସ୍ୱାଗତ' ଥିଲା ଦଳର ଆଉ ଏକ ପଦକ୍ଷେପ । ନୂଆ ହୋଇ ଆସୁଥିବା କର୍ମଚାରୀମାନଙ୍କୁ ସ୍ୱାଗତ କରି, ତାଙ୍କର ବାସସ୍ଥାନ, ଚଳଣି ପାଇଁ ସୁବିଧା ଆଦିର ଚିନ୍ତା କରାଯିବା ସହିତ ପ୍ରତ୍ୟେକଙ୍କୁ ଏକ 'ସ୍ୱାଗତ ବାର୍ତ୍ତା' ଓ ଗୋଟିଏ ତମ୍ବା ମୁଦି ଦିଆଗଲା । ଏହି ପ୍ରୟୋଗ ଫଳରେ ନୂଆ କର୍ମଚାରୀମାନେ ମଧ୍ୟ ଆରମ୍ଭ ଦିନରୁ ଏ ଜାଗା ପ୍ରତି ଓ ଏଠାକାର ସମାଜ ଜୀବନ ପ୍ରତି ଅନୁକୂଳ ମତ ପୋଷଣ କରିବାକୁ ପ୍ରେରିତ ହେଲେ ।

'ଅବସର ସମୟର ସୁବିନିଯୋଗ'କୁ ଆଖିରେ ରଖି ଆରମ୍ଭ ହେଲା ଫୁଲ, ଫଳ ଓ ପନିପରିବା ବଗିଚା ପାଇଁ ପୁରସ୍କାର ବିତରଣ । କର୍ମଚାରୀମାନଙ୍କର ନିଜ ପ୍ରଚେଷ୍ଟାରେ ସବୁଜ ସୁନ୍ଦର ହୋଇ ଉଠିଥିବା ବଗିଚାମାନଙ୍କର ନିରୀକ୍ଷଣ କରାଗଲା । ସର୍ବୋତ୍କୃଷ୍ଟ ବଗିଚାକାରୀଙ୍କୁ ପୁରସ୍କାର ଦିଆଗଲା ଏବଂ ତାଙ୍କୁ ଉତ୍ସାହିତ କରାଗଲା ।

'ରୋଗୀର ଶୁଶ୍ରୂଷା' ଯୋଜନାରେ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଦଳର ଦୁଇଜଣ ସଦସ୍ୟ ସ୍ଥାନୀୟ ଡାକ୍ତରଖାନାକୁ ରୋଗୀମାନଙ୍କୁ ଦେଖିବାକୁ ଗଲେ । ତାଙ୍କର ଭଲମନ୍ଦ ପଚାରିଲେ । ଯଥା ସମ୍ଭବ ସାହାଯ୍ୟ ଓ ସେବାକଲେ । ଲୋକମାନଙ୍କ ଭିତରେ ସ୍ନେହର ଫୁଆରା ସୃଷ୍ଟି ନିମନ୍ତେ ଏହି ଉଦ୍ୟମଟି ଅଛି ବହୁତେ ଫଳପ୍ରସୂ ହେଲା ।

୧ ୯ ୯ ୫ ମସିହାର ଦୀପାବଳି ତିଥିରେ ଅନ୍ଧାର ରୂପୀ ଅଜ୍ଞାନତାର ଦୂରୀକରଣ ପାଇଁ ଜ୍ଞାନର ଦୀପାଳି ଜଳାଇବାର ଏ ଯେଉଁ ପ୍ରୟାସ ଆରମ୍ଭ ହୋଇଥିଲା, ତାହା ମାତ୍ର ଦୁଇ ଜଣଙ୍କୁ ନେଇ । କିନ୍ତୁ ଦୁଇବର୍ଷ ପରେ ଏ ଦଳରେ ମୋଟ ସଦସ୍ୟ ଥିଲେ ଚାଳିଶ ଜଣ । ଦଳ ଭିତରେ ଥିଲେ ଜଣେ ସଂଗଠକ ଓ ନେତୃତ୍ୱ ନେବାପାଇଁ ଗୋଟିଏ ପାଞ୍ଚଜଣିଆ ମଣ୍ଡଳୀ । ସେମାନେ ସପ୍ତାହର ସୋମବାର ସନ୍ଧ୍ୟାରେ ନିଜ ନିଜର ବାସଗୃହ ଭିତରେ ବସି କାର୍ଯ୍ୟକାରୀ ଯୋଜନାର ଅନୁଧ୍ୟାନ କରୁଥିଲେ । ଏହା ସହିତ ଆଗାମୀ ଯୋଜନାର ରୂପରେଖ ସଂପର୍କରେ ପରିକଳ୍ପନା କରୁଥିଲେ । ପ୍ରତ୍ୟେକ ସଭ୍ୟ ମାତ୍ର ପଇଁତିରିଶ ଟଙ୍କାର

ସଦସ୍ୟ ଶୁଳ୍କ ଦେଉଥିଲେ । ଏହାର ହିସାବ ଥିଲା- ଜଣେ ପାଞ୍ଚଜଣଙ୍କୁ ସାକ୍ଷର କରିବ ଏବଂ ଜଣକୁ ସାକ୍ଷର କରିବା ନିମନ୍ତେ ଖର୍ଚ୍ଚ ରଖାଯାଇଥିଲା ମାତ୍ର ସାତ ଟଙ୍କା । ସାତ ଟଙ୍କାର ହିସାବ ହେଲା- ପାଞ୍ଚଟଙ୍କା ମୂଲ୍ୟର ଗୋଟିଏ ଖାତା, ଏକ ଟଙ୍କାର ଗୋଟିଏ ପେନ୍‌ସିଲ୍ ଓ ଏକଟଙ୍କାର ଗୋଟିଏ ରବର । ଏହା ସହିତ ପ୍ରତ୍ୟେକ ମାସରେ ପାଞ୍ଚ ଟଙ୍କାର ମାସିକ ଶୁଳ୍କ ରଖାଯାଉଥିଲା । ଅନ୍ୟ ଖର୍ଚ୍ଚ ନ ଥିଲା କହିଲେ ଚଳେ ।

ଅନ୍ୟ କାହାଠାରୁ ଚାନ୍ଦା ନେବା ବା ସରକାରୀ ସାହାଯ୍ୟ ଭିକ୍ଷା କରିବାକୁ ଦଳର ଆଗ୍ରହ ନଥିଲା । ସମସ୍ତ ସଦସ୍ୟ ନିଜର ସମ୍ମତି ଏବଂ ପରିଚୟ ସ୍ୱରୂପ ଗୋଟିଏ ତମ୍ବା ମୁଦି ପିନ୍ଧୁଥିଲେ । ମାସକୁ ଥରେ ଭୋଜି ହେଉଥିଲା । ଚାବି ରିଙ୍ଗ୍‌ରେ "ସମାଜ ଚେତନା ବାହିନୀ" ଲେଖାଯାଇ ସ୍ଥାନୀୟ ଲୋକଙ୍କ ଭିତରେ ବଣ୍ଟାଯାଉଥିଲା ଓ ବାହିନୀର ପରିଚୟ ଏହାରି ମାଧ୍ୟମରେ ଦିଆଯାଉଥିଲା । ଗୋଟିଏ ମାସିକ ପତ୍ରିକା 'ବାହିନୀ ବାର୍ତ୍ତା' ନାମରେ ପ୍ରକାଶିତ ହେଉଥିଲା । ବାହିନୀର ବୈଠକରେ ଶଙ୍କରାଚାର୍ଯ୍ୟ ରଚିତ 'ରାମାଷ୍ଟକ' ଓ ଗାନ୍ଧିଜୀଙ୍କ 'ବୈଷ୍ଣବ ଜନ ତୋ...' ଆଦି ବୋଲା ହେଉଥିଲା ।

ଦୁଇ ବର୍ଷ ପର୍ଯ୍ୟନ୍ତ ଏ କାର୍ଯ୍ୟ ନିରନ୍ତର ଚାଲୁ ରହିଥିଲା ଏବଂ ଏହାର ସୁଫଳ ବଲାଣି ଗ୍ରାମବାସୀ ପାଇ ପାରିଲେ । କାଳକ୍ରମେ କେତେ ଜଣ ଉଦ୍ୟୋକ୍ତା ସ୍ଥାନାନ୍ତରୀତ ହେବା ଫଳରେ ଏହି ପ୍ରୟୋଗ ବର୍ତ୍ତମାନ ବନ୍ଦ ଅଛି । ଏ ପ୍ରକାର ପ୍ରୟୋଗ ଓଡ଼ିଶାର ଗାଁ ଗଣ୍ଡାରେ ଆରମ୍ଭ କରାଗଲେ, ବିଶେଷଭାବେ ଶିକ୍ଷିତ ଯୁବଗୋଷ୍ଠୀ ଆଗଭର ହୋଇ ଏହି ପରି କାର୍ଯ୍ୟରେ ମନଦେଲେ, ସମାଜ ଜୀବନରେ ସଚେତନତା ସୃଷ୍ଟି ହେବା ସହିତ ଜନ ଜୀବନରେ ସରସତା ଭରି ଉଠନ୍ତା, ଏଥିରେ ସନ୍ଦେହ ନାହିଁ ।

ନିର୍ଦ୍ଦେଶକ,<br>
ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର,<br>
ଓଡ଼ିଶା, ଭୁବନେଶ୍ୱର ।

# ମୁଁ ସବୁକିଛି କରି ପାରିବି

ଗୋରାଚାନ୍ଦ ମିଶ୍ର



ଥରେ ସ୍ୱାମୀ ବିବେକାନନ୍ଦ ବରୋଦାରେ ଭାଷଣ ଦେଉଥିଲେ । ସ୍ୱାମିଜୀଙ୍କ କଥା ଶୁଣିବା ଏବଂ ତାଙ୍କୁ ଦେଖିବା ଲାଗି ସଭାରେ ବହୁ ଲୋକଙ୍କ ସମାଗମ । ସ୍ୱାମିଜୀ ଅନର୍ଗଳ କହି ଚାଲିଥାନ୍ତି । ହଠାତ୍ ଜଣେ ଯୁବକ ଉଠି ଠିଆ ହେଲେ । ବଡ଼ ପାଟିରେ କହିଲେ, ''ଖାଲି ତ ଭଗବାନ, ଭଗବାନ ହେଉଛ । ତୁମେ କ'ଣ ଭଗବାନଙ୍କୁ ଦେଖିଛ ? ତାଙ୍କ ରୂପ, ଭେକ କିପରି କହି ପାରିବ ?''

ସ୍ୱାମିଜୀ କିଛି ସମୟ ଚୁପ୍ ରହିଲେ । ସଭାର ଲୋକେ ମଧ୍ୟ ଚୁପ୍ । ସ୍ୱାମିଜୀ ଯୁବକକୁ କହିଲେ, ''ମୁଁ ଭଗବାନଙ୍କୁ ଦେଖିଚି କି ନାହିଁ, କହି ପାରିବି ନାହିଁ । କହିଲେ ମଧ୍ୟ ତୁମେ ବିଶ୍ୱାସ କରିବ ନାହିଁ । କିନ୍ତୁ ତୁମେ ଦେଖିଚ । ମନେ ପକାଅ, କେଉଁଠି, କେତେବେଳେ ଦେଖିଚ ।''

ଯୁବକ କହିଲେ, ''ମୋର ବିଲ୍‌କୁଲ୍ ମନେ ପଡୁନି ।'' ସ୍ୱାମିଜୀ କହିଲେ, ''ଏହି ଆଠ ଦଶଦିନ ତଳର କଥା । ତୁମେ ଗୋଟିଏ ଗାଁରୁ ତୁମ ଗାଁକୁ ଫେରୁଥିଲ । ଉଦୁ ଉଦିଆ ଖରାବେଳ । ପାଦରେ ଚପଲ ନାହିଁ । କାନ୍ଧରେ ଖଣ୍ଡିଏ ଗାମୁଛା । ତୁମକୁ ଭୀଷଣ ଶୋଷ । ଶୋଷରେ ହଂସା ଉଡ଼ିଗଲା ଭଳି ଅବସ୍ଥା । ଗାଁ ମଝିରେ ଆଉ ଗୋଟିଏ ଛୋଟ ଗାଁ । ତୁମେ ଗାଁ ଲୋକଙ୍କ ଏ ଘର ସେ ଘର ହୋଇ ପାଣି ମନ୍ଦେ ମାଗିଲ । କେହି ଟୋପେ ପାଣି ଦେଲେ ନାହିଁ । କାରଣ ତୁମେ ଉଚ୍ଚଜାତିର ପିଲା । ତୁମକୁ ପାଣି ଦେଲେ ସେମାନଙ୍କ ପାପ ହୋଇଯିବ ବୋଲି ସେମାନଙ୍କର ଅନ୍ଧ ବିଶ୍ୱାସ ।

ସେ ଗାଁର ରାସ୍ତା ଉପରେ ଗୋଟିଏ ମୁଣ୍ଡିଆ ଭଳି ଜାଗା । ସେଠି ରହନ୍ତି ଏକ ମୁସଲମାନ ପରିବାର । ଘୋରଣା, ପେଷଣା ତିଆରି କରିବା ତାଙ୍କର ବେଉଷା । ଘରେ

ତିନି ଚାରୋଟି ଛେଳି । ଏହି ଘରର ଗୋଟିଏ ବୁଢ଼ୀ ତୁମକୁ ଡାକିଲେ । ଗଛତଳେ ଗୋଟିଏ ମଶଣା ପାରି ଦେଲେ । ବସିବାକୁ କହିଲେ । ଘରୁ ଆଣିଲେ ସରବସା ଛେଳିକ୍ଷୀର । ତୁମକୁ ପିଇବାକୁ ଦେଲେ । କହିଲେ, ଖରା ନଇଁଯାଉ ଘରକୁ ଯିବ । ସେତେବେଳେ ତୁମେ ଭାବିଲ,ଏ ବୁଢ଼ୀ ତ ସାକ୍ଷାତ ଭଗବାନ । ବୁଢ଼ୀକୁ ତୁମେ ମନେ ମନେ କେତେ ମୁଣ୍ଡିଆ ମାରିଲ ସେଦିନ । ଏକଥା କ'ଣ ସତ ନୁହେଁ ?

ଯୁବକ କହିଲେ, ''ହଁ ତ ସତକଥା ।''

ସ୍ୱାମୀ ବିବେକାନନ୍ଦ କହିଲେ, ତୁମ ରାଜ୍ୟ ସନ୍ଥ କବି ନରସିଂହ ମେହଟାଙ୍କ ଭଜନ ଘରେ ଘରେ ସମସ୍ତଙ୍କ ମୁଖସ୍ଥ । ସେ ଗାଇଥିଲେ- ''ବୈଷ୍ଣବ ଜନ ତୋ ତେନେ କହିୟେ ଯେ ପୀଡ଼ାପରାଇ ଜାଣେ ରେ '' । ଯିଏ ପରର ପୀଡ଼ା ବା ଅନ୍ୟର ଦୁଃଖକୁ ନିଜର ପୀଡ଼ା ଭାବରେ ଅନୁଭବ କରିଥାଏ – ସେ କେବଳ ବିଷ୍ଣୁଭକ୍ତ ବା ବୈଷ୍ଣବ ! ସେ ଭଗବାନ ।

ସ୍ୱାମିଜୀ ଭାଷଣରେ କହିଲେ, ଜୀବନ୍ତ ଭଗବାନ ତୁମ ଭିତରେ ଅଛନ୍ତି ତଥାପି ତୁମେମାନେ ଗୀର୍ଜା, ମନ୍ଦିର ତିଆରି କରିଚାଲିଚ । ସମସ୍ତ ପ୍ରାଣୀ ଭଗବାନଙ୍କ ମନ୍ଦିର । ମନୁଷ୍ୟ ପୁରୁଷୋତ୍ତମ । ଯଦି ପାପ ବୋଲି କିଛି ଥାଏ- ତା' ହେଉଛି ନିଜକୁ କିମ୍ବା ଅନ୍ୟକୁ ଦୁର୍ବଳ ବୋଲି କହିବା ।

ନିଜର ଏକ ଅନୁଭୂତିର କଥା ବର୍ଣ୍ଣନା କରି ସ୍ୱାମିଜୀ କହିଲେ, '' ଏକଦା ମୁଁ ବାରାଣାସୀରେ ଥିବା ସମୟରେ ଗୋଟିଏ ଜାଗାକୁ ଚାଲି ଚାଲି ଯାଉଥିଲି । ମୁଁ ଏ ଯେଉଁ ଜାଗାଟି କଥା କହୁଛି, ତା'ର ଗୋଟିଏ ପାଖରେ ଏକ ବଡ଼ ପୋଖରୀ । ଅନ୍ୟ ପାଖରେ ଏକ ଉଚ୍ଚା ପାଚେରି । ଏହି ପାଚେରି ଉପରେ ଓ ତଳେ ଗୁଡ଼ିଏ ମାଙ୍କଡ଼ ବସିଥିଲେ । ବାରାଣାସୀର ମାଙ୍କଡ଼ଗୁଡ଼ାକ ମସ୍ତ ବଡ଼ ବଡ଼ । ବେଳେ ବେଳେ ଭୀଷଣ ଉପଦ୍ରବ କରନ୍ତି । ସେମାନେ ମନେ ମନେ ବିଚାର କଲେ, ମତେ ସେ ବାଟ ଦେଇ ଆଗକୁ ଯିବାକୁ ଦେବେନାହିଁ । ମୁଁ ପାଦେ ଅଗ୍ରସର ହେବାମାତ୍ରେ ମାଙ୍କଡ଼ଗୁଡାକ ଏକାବେଳେ ଖୁାଁ ଖାଁ କରି ରଡ଼ି ଛାଡ଼ିଲେ । ସାତ ଆଠଟା ମାଙ୍କଡ଼ ମୋ ପାଖକୁ ଲାଗି ଆସିଲେ । ମୋ ଦି' ଗୋଡ଼କୁ ଯାବୁଡ଼ି ଧରିଲେ । ମୁଁ ପାଦକ୍ ଛିଞାଡ଼ି ଜୋର୍‌ରେ ଦୌଡିବାକୁ ଆରମ୍ଭ କଲି । ସେମାନେ ମତେ ଆକ୍ରମଣ କରିବାକୁ ବାହାରିଲେ । ମୋ ଦୌଡ଼ ଅପେକ୍ଷା

ସେମାନେ ଦ୍ରୁତ ଗତିରେ ମୋ ପିଛା କଲେ । ମୋତେ କାମୁଡ଼ିବାକୁ ଆରମ୍ଭ କରିଦେଲେ । ରକ୍ଷା ପାଇବା ମୋ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା ।



କିନ୍ତୁ ମୁଁ ସେହି ସମୟରେ ଜଣେ ଅପରିଚିତ ବ୍ୟକ୍ତିଙ୍କୁ ଭେଟିଲି । ସେ ମୋଠୁ ଟିକିଏ ଦୂରରେ ଥିଲେ । ସେ ପାଟି କରି ମତେ କହିଲେ, ''ଡରି ଦୌଡି ପଳାଅ ନାହିଁ । ମାଙ୍କଡ଼ମାନଙ୍କ ସମ୍ମୁଖୀନ ହୁଅ । ସାମନା କର ।'' ମୁଁ ବୁଲି ପଡ଼ିଲି ଏବଂ ମାଙ୍କଡ଼ମାନଙ୍କର ମୁହାଁ ମୁହିଁ ହେଲି । ସେମାନେ ପଛଘୁଞ୍ଚା ଦେଲେ । ମୋ ପାଖ ଛାଡି ଦୌଡ଼ି ପଳାଇଲେ ।

ତାହାହିଁ ସାରା ଜୀବନ ପାଇଁ ମୋ ପକ୍ଷରେ ଏକ ଶିକ୍ଷା ହୋଇ ରହିଲା । ବିପଦ ଯେତେ ଭୟଙ୍କର ହେଉନା କାହିଁକି ତା' ସହିତ ମୁହାଁ ମୁହିଁ ହୁଅ । ତା'ର ମୁକାବିଲା କର । ସାହସର ସହିତ ତା'ର ସମ୍ମୁଖୀନ ହୁଅ ।

''ଲୋକ ଯାହା କହିବେ, କହନ୍ତୁ, ନିଜ ଉପରେ ଆସ୍ଥା ରଖ । ତାହାହିଁ ଉଚିତ ଓ ଉତ୍କୃଷ୍ଟ ମାର୍ଗ । ସମସ୍ତ ଶକ୍ତି ତୁମ ମଧ୍ୟରେ ରହିଅଛି । ସେଥିପ୍ରତି ସଚେତନ ହୁଅ । ନିଜକୁ ନିଜେ କହ, ମୁଁ ସବୁ କିଛି କରି ପାରିବି ।''

ସଂପାଦକ,

'ପ୍ରତିଭା', କଟକ ।

# ଆଈ ଦେଖାଇଲା ଜୀବନ ବାଟ



ବନଜ ଦେବୀ

ଆନୁଆର ମିଆଁ ଦଶରଥପୁର ଗାଆଁ ମୁଖିଆ
ସକାଳୁ ଗାଧୋଇ ଶିବ ମନ୍ଦିରରେ ମାରେ ମୁଣ୍ଡିଆ
ଜଳପାନ ପରେ ଘରେ ଘରେ ପଶି ବୁଝେ ଖବର
ହସି ହସି କହେ ସାରା ଗାଆଁଟାତ ମୋ ପରିବାର ।

ମୁଖିଆ ଭାବରେ ସଭିଏଁ କରନ୍ତି ତାକୁ ସଲାମ
ଠିକ୍ ଠିକ୍ କଥା କହେ ବୋଲି ତା'ର ବଡ଼ ସୁନାମ,
ପିଲାଙ୍କୁ ଦେଖିଲେ ହସି କହେ ମିଆଁ, ଶୁଣରେ ପିଲେ,
ତମେ ପଢ଼ ପାଠ; ଆମେ କଣ ଖାଲି ଖଟିବୁ ବିଲେ ?
ବୁଢ଼ା ହେଲୁବୋଲି ଜୀବନଟା ଆମ ଗଲାକି ସରି ?
ପଢ଼ିବା ଜାଣିବା ଶିଖିବାର ଏବେ ଆସିଛି ପାଳି ।

ଗାଆଁ ମାଷ୍ଟରଙ୍କ ପିଣ୍ଡାରେ ବସି ସେ ନିଇତି ସଂଜେ
କେତେ କଥା ଶିଖେ, ଦେଶ ବିଦେଶର ଖବର ବୁଝେ
ମନ ହୁଏ ତା'ର ସବୁ ଶିଖି, ସିଏ ଗାଆଁଟା ସାରା
ଶିଖାଇ ଦିଅନ୍ତା, ବଦଳି ଯାଆନ୍ତା ଜୀବନଧାରା ।

ଘର ଘର ବୁଲି ବୁଝେ ବୋଲି ସିଏ ଗାଆଁ ଖବର
ଗୁଣ୍ଡା ପୁଅ ତା'ର ଗାଆଁ ଟାଉଟର, କି ଗରଗର
ଗାଁ ମୁଖିଆ ସେ ଟାଣ କରିଥାଏ ଗାଆଁର ମେଳି
ତୁଟେଇ ପାରେନି ଆପଣା ଘରର ଅଯଥା କଳି ।

ପଡ଼ିଶା ଘରେ ତା' ନିରିମାଖି ବୁଢ଼ୀ ରତନୀ ଆଈ
କେହି ନାହିଁ ତା'ର, ପେଟ ପୋଷେ ଛେଳି କୁକୁଡ଼ା ନେଇ
ଆନୁଆର ନାତି, ଟିକି ମିଆଁଟିର ବୟସ ଚାରି
ରତନୀ ଆଈର ମିଆଁ ନାତି ପାଇଁ ଶରଧା ଭାରି
ଚାହିଁ ବସିଥାଏ ଚାହାଳି ଫେରନ୍ତା ତାଆରି ବାଟ
ଗେଲ କରିଦିଏ ହାତରେ ଧରାଇ, ପିଜୁଳି, ଆତ ।

ଦିନେ ଦିଗଲା ଆଈ ଛେଳି, ଆନୁଆର ବାଡ଼ିରେ ପଶି
ଖାଇଗଲା ଯେତେ କାକୁଡ଼ି ଗଛ ଓ କଖାରୁ କଷି
ଚଦି ମିଆଁ ପୁଅ, କହିଲା,ଦେବି ମୁଁ ଛେଳିକୁ ହାଣି
ବଢ଼ିଆ ମାଉଁସ ତୁଉଣ ଖାଇବୁ ପାଞ୍ଚ ପରାଣୀ ।

ଡରି ମରି ଆଈ ସେଦିନୁ ଛେଳିକୁ ରଖିଲା ବାନ୍ଧି
ସେଦିନ ରାତିରେ ଚୋରି ହେଲା ତା'ର କଦଳୀ କାନ୍ଧି,
ତହିଁ ଆରଦିନ ସଂଜକୁ କୁକୁଡ଼ା ନଆସେ ଫେରି,
ଗୋଟି ଗୋଟି କରି ଛଅଟି କୁକୁଡ଼ା ହୋଇଲା ଚୋରି ।

ନିଇତି ରାତିରେ ଗରମ ଭାତକୁ କୁକୁଡ଼ା ଝୋଳ
ଖାଇ ଆନୁଆର ଭାଳଇ ମନେ, ଯେ' ନୁହଇ ଭଲ
ଚଉପାଢ଼ି ପରେ ସେଦିନ ଡାକିଲା ଗାଆଁ ନିଶାପ
କହିଲା ଗାଁର ମୁଖିଆ ମୁଁ, ହେଲେ କରିଛି ପାପ ।

ମାଉସୀର ଛେଳି ବାଡ଼ିର ଗଛଟେ ଖାଇଲା ବୋଲି
ମୋ'ରି ପୁଅ ତା' ଛଅଟା କୁକୁଡ଼ା ଖାଇଛି ମାରି
ଅଜାଣତେ ମଧ୍ୟ ସେ ଦୋଷେ ହୋଇଛି ମୁଁ ଭାଗୀଦାର,
ଦଣ୍ଡ ନେବାପାଇଁ, ଠିଆ ହେଲୁ ଆମେ, ବିଚାର କର ।



କାହିଁଥିଲା ଧାଇଁ ଆସି ପହଞ୍ଚିଲା ରତନୀ ଆଈ
କାନ୍ଦ କାନ୍ଦ ହୋଇ କହିଲା, ସଂସାରେ କେହି ମୋ ନାହିଁ
ଆନୁଆର ଟିକି ନାତିଟି ପରା ମୋ' ନୟନ ତାରା
ଘର ବାଡ଼ି ସବୁ ତାଆରି ନାଆଁରେ କଲି କବଲା
ସେଇ ଧନକୁ ମୋ କୁକୁଡ଼ା କେତେଟା ଦେଇଛି ଯାଚି,
ଭାବ ଦିଆ ନିଆ ପାଇଁକି କେଉଁଠି ନ୍ୟାୟ ହୋଇଛି ?

ଦୂରଛଡା ହୋଇ ଠିଆ ହୋଇଥିଲା ମୁଖିଆ ପୁଅ
ବୁଢ଼ୀ କଥା ଶୁଣି, ଝାଉଁଳି ପଡ଼ିଲା ଲାଜରେ ମୁହଁ
ଲୁହାର କଟୁରୀ, ଦି'ଭାଗ କରେ, ପଡ଼ିଲେ ଚୋଟ
ସେନେହ ଛୁରୀରେ ଝରେ ଯେ ରକତ, ଯୋଡ଼େ ସେ ଫାଟ ।

ପଡ଼ିଶା ଘରକୁ ପର ଭାବି ସିଏ ସାଧିଲା ଦାଉ
ଆଈ ଦେଖାଇଲା ଜୀବନର ବାଟ ଚାଲିବା ହେଉ ।

**ଶିବଛାୟା, ରଥରୋଡ, ଭୁବନେଶ୍ୱର**

# କର୍ମୀ : ପାଞ୍ଚଜଣ

ଶ୍ରୀ ଭୁବନାନନ୍ଦ ତ୍ରିପାଠୀ



ସାରା ଦେଶରେ ''ସାକ୍ଷରତା ଅଭିଯାନ'' ଜୋରସୋର୍‌ରେ ଚାଲିଛି । ଓଡ଼ିଶାର ବରଗଡ଼ ଜିଲ୍ଲା ଏ ଅଭିଯାନରେ ସାମିଲ ହୋଇ ନିଜର ଉଦ୍ୟମ ଜାରି ରଖିଛି । ବରପାଲି ବ୍ଲକ୍ ଏହି ଜିଲ୍ଲା ମଧ୍ୟରେ ଏକ ସକ୍ରିୟ କାର୍ଯ୍ୟକ୍ଷେତ୍ର । ଅକ୍ଟୋବର ୨୪ ତାରିଖ ଦିନ ଏହି ବରପାଲି ବ୍ଲକର କେତୋଟି ଗ୍ରାମୀଣ କେନ୍ଦ୍ର ବୁଲି ଦେଖିବାର ସୁଯୋଗ ମିଳିଥିଲା । ଏହି ପରିଦର୍ଶନ ସମୟରେ ପାଞ୍ଚଜଣ ପ୍ରମୁଖ କର୍ମୀଙ୍କର କାର୍ଯ୍ୟକଳାପ ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା ।

## ପ୍ରଥମ କର୍ମୀ :

ଜିଲ୍ଲା ସାକ୍ଷରତା ସମିତିର ସଂପାଦକ ଶ୍ରୀ ଗଙ୍ଗାଧର ପଣ୍ଡା । ବୟସ ସତୁରୀ । ଅତିରିକ୍ତ ଜିଲ୍ଲାପାଳ ପଦରୁ ଅବସର ପ୍ରାପ୍ତ । କମ୍ ଉଚ୍ଚର ସୁସ୍ଥ ମଣିଷ ଜଣେ । କେବଳ ବାମ କାନକୁ କମ୍ ଶୁଭୁଛି । ଗସ୍ତ ସମୟରେ ରାତ୍ରି ପ୍ରାୟ ୧୦ଟା ସମୟରେ ଚତୁର୍ଥ କେନ୍ଦ୍ରକୁ ଯିବା ରାସ୍ତାରେ ଆମେମାନେ ବ୍ୟସ୍ତତା ପ୍ରକାଶ କରିବାବେଳେ ସେ ଉତ୍ସାହର ସହିତ କହୁଥିଲେ - ''ଆମର ଏପଟେ ଲୋକମାନେ ରାତି ଦୁଇଟା ପର୍ଯ୍ୟନ୍ତ ଜଗିଥିବେ । ଚାଲନ୍ତୁ ଦେଖିବେ । ଏମିତି ରାତି ବାରଟା, ଗୋଟାଏ ଯାଏଁ ଫିଲ୍ଡ୍‌ରେ ବୁଲିବା ମୋର ଅଭ୍ୟାସ ହୋଇଯାଇଛି । ଏ ପ୍ରକାର ନିର୍ଭରଶୀଳ ବାର୍ତ୍ତା ଶୁଣିବା ପରେ ତାଙ୍କଠାରୁ କୋଡ଼ିଏ ବର୍ଷରେ ସାନଥିବା ଅନ୍ୟ ସହାଯାତ୍ରୀମାନଙ୍କର ମନବଳ ବଢ଼ି ଯାଇଥିଲା । ସାକ୍ଷରତା ଅଭିଯାନର ସଫଳତା ବିଷୟରେ ପ୍ରଥମେ ବହୁତ ସନ୍ଦିହାନ ଥିବା ଶ୍ରୀ ପଣ୍ଡା କାର୍ଯ୍ୟକ୍ରମର ରୂପରେଖ ଦେଖିବା ପରେ, ବିଶେଷକରି ଗ୍ରାମାଞ୍ଚଳରେ ଲୋକମାନଙ୍କର ଉତ୍ସାହ ଦେଖିବା

ପରେ ବର୍ତ୍ତମାନ ଅଭିଯାନ ସଂପର୍କରେ ବେଶ୍ ଉତ୍ସାହୀ । କାର୍ଯ୍ୟକର୍ତ୍ତାଙ୍କୁ ଉପଯୁକ୍ତ ମାର୍ଗଦର୍ଶନ ଦେବା କ୍ଷେତ୍ରରେ ତାଙ୍କର ନିର୍ଦ୍ଦେଶଗୁଡ଼ିକ ପ୍ରଣିଧାନଯୋଗ୍ୟ । ଜିଲ୍ଲା କେନ୍ଦ୍ରରୁ ବ୍ଲକ୍‌କେନ୍ଦ୍ର ପର୍ଯ୍ୟନ୍ତ ଯୋଜନାକୁ ପ୍ରସାର କରିବା ପରେ ସମସ୍ତ ନିଷ୍ପତ୍ତି ବ୍ଲକ୍ ଅଧିକାରୀଙ୍କ ଉପରେ ନ୍ୟସ୍ତ କରି ଦେଇଛନ୍ତି । ଅନ୍ୟ ଯୁବକର୍ମୀମାନଙ୍କୁ ବଡ଼ ବଡ଼ ଆଶା ଦେଖାଇବାର ନାହିଁ । ଯୋଜନାକୁ ନିଜର କରିଦେବା ପାଇଁ ଆନ୍ତରିକ ଉଦ୍ୟମ ଏବଂ ଏହି ଭାବକୁ ପ୍ରତ୍ୟେକ ହୃଦୟରେ ପହଞ୍ଚାଇଦେବା ତାଙ୍କ ଦ୍ୱାରା ସଫଳ ଭାବେ ହୋଇପାରିଥିବା ଦେଖିବାକୁ ମିଳିଲା । ''କର୍ମ ହିଁ ସାଧନା'' - ତତ୍ତ୍ୱରେ ଦୃଢ଼ ବିଶ୍ୱାସ ରଖିଥିବା ଶ୍ରୀ ପଣ୍ଡା କହନ୍ତି, ରାମ ମହାରଣା ହାତରେ ତିଆରି ଠାକୁରଙ୍କ ମୂର୍ତ୍ତି ଯଦି ସବୁକିଛି ବୁଝି ଦେଉଥାଆନ୍ତେ, ତେବେ ଠାକୁରଙ୍କ ଅପେକ୍ଷା ରାମ ମହାରଣାକୁ ପୂଜା କଲେ ଅଧିକ ଲାଭ ମିଳନ୍ତା । ଶ୍ରୀ ପଣ୍ଡା ହେଉଛନ୍ତି ଜିଲ୍ଲା ସାକ୍ଷରତା ସମିତିର ଜଣେ ଆଗ ଧାଡ଼ିର କର୍ମୀ ।

## ଦ୍ୱିତୀୟ କର୍ମୀ :

ଓଡ଼ିଶାର ତିନିଶହ ଚଉଦ ଗୋଟି ବ୍ଲକ୍‌ମାନଙ୍କ ମଧ୍ୟରୁ ବରପାଲି ବ୍ଲକ୍ ଅନ୍ୟତମ । ମାତ୍ର ଏହି ବ୍ଲକ୍‌ର ଉନ୍ନୟନ ଅଧିକାରୀ ଶ୍ରୀ ଚନ୍ଦ୍ରମଣି ସେଠ୍, ଏକ ସ୍ୱତନ୍ତ୍ର ବ୍ୟକ୍ତି । ସାକ୍ଷରତା ଅଭିଯାନରେ ଶ୍ରୀ ସେଠ୍‌ଙ୍କ ଅବଦାନ ମଧ୍ୟ ଅନୁସରଣ ଯୋଗ୍ୟ । ତାଙ୍କ ବ୍ୟସ୍ତ କାର୍ଯ୍ୟ ନିର୍ଘଣ୍ଟ ମଧ୍ୟରେ ''ସାକ୍ଷରତା''ର ସ୍ଥାନ ସବୁଠାରୁ ଆଗରେ । ଦେହରେ ଜ୍ୱର ଥାଇ କମ୍ପୁଥିବା ସମୟରେ ସେ ସାକ୍ଷରତା କାର୍ଯ୍ୟରେ ଭାଗ ନେଇଛନ୍ତି । ବ୍ଲକ୍‌ର ବିଦ୍ୟାଳୟ ପରିଦର୍ଶକମାନଙ୍କୁ ଏବଂ ବଛା ବଛା ଶିକ୍ଷକମାନଙ୍କୁ ଏ କାର୍ଯ୍ୟରେ ନିୟୋଜନ କରିବାରେ ସେ ଜଣେ ସଫଳ ବିନ୍ଧାଣି । ଗାଁକୁ ଗାଁ ଯାଇଛନ୍ତି । ଲୋକମାନଙ୍କୁ ଭେଟିଛନ୍ତି । ଯୋଜନାକୁ ବୁଝାଇଛନ୍ତି । ଅନ୍ୟସବୁ ସରକାରୀ ଯୋଜନାଠାରୁ ''ସାକ୍ଷରତା ଅଭିଯାନ'' କିପରି ସ୍ୱତନ୍ତ୍ର ଧରଣର ତାହା ଜଣାଇଛନ୍ତି । ତାଙ୍କରି ପ୍ରେରଣାରେ ଗାଁର ଯୁବକ ଯୁବତୀ, ପଞ୍ଚାୟତରେ ସରପଞ୍ଚ ଓ ୱାର୍ଡମେମ୍ବର ସ୍ୱେଚ୍ଛାସେବୀ ହୋଇ ବାହାରିଛନ୍ତି । ସାହି ସାହିରେ ପାଠପଢ଼ା ଆରମ୍ଭ ହୋଇଛି । ଯୋଜନାକୁ ଗ୍ରାମବାସୀଗଣ ଆପଣେଇ ନେଇଛନ୍ତି । ପ୍ରତି ଗାଁରେ ସ୍ୱେଚ୍ଛାସେବୀ ମଣ୍ଡଳୀ ଗଢ଼ି ଉଠିଛି । କେବଳ ସାକ୍ଷରତା ନୁହେଁ, ଅନ୍ୟାନ୍ୟ

ସାମାଜିକ ଓ ସାମୂହିକ କାର୍ଯ୍ୟରେ ମଧ୍ୟ ଏ ଯୁବ ସଂଗଠନ ଆଗୁଆ ହୋଇ ବାହାରିଛନ୍ତି । ପ୍ରଥମ ଭାଗ ପାଠ ଶେଷ ହେବାପରେ ଦ୍ୱିତୀୟ ଭାଗ ପାଠ ବହି ମିଳିବାରେ ବିଳମ୍ବ ହେବାରୁ ବ୍ଲକ୍‌ରେ ସ୍ୱେଚ୍ଛାସେବୀମାନେ ସାଇକେଲ ଶୋଭାଯାତ୍ରା କରି ଜିଲ୍ଲାପାଳଙ୍କୁ ଭେଟ କରିଛନ୍ତି । ଦାବି ଜଣାଇଛନ୍ତି। ନିର୍ଭର ପ୍ରତିଶ୍ରୁତି ପାଇବା ପରେ ଫେରି ଆସିଛନ୍ତି । ସାକ୍ଷରତାର ନାଟକ ମଞ୍ଚସ୍ଥ ହୋଇଛି । ସାକ୍ଷରତାର ସଂଗୀତ ବୋଲାଯାଉଛି । ଏ ପ୍ରକାର ବ୍ଲକ୍‌ରେ ସାକ୍ଷରତାର ରଥ ଶ୍ରୀ ସେଠ୍‌ଙ୍କ ନେତୃତ୍ୱରେ ଆଗକୁ ମାଡ଼ି ଚାଲିଛି



ଶ୍ରୀ ସେଠ୍ ଏଇ ଅଳ୍ପଦିନ ତଳେ ଅନ୍ୟତ୍ର ବଦଳି ହୋଇ ଯାଇଛନ୍ତି । ଆମ ପରିଦର୍ଶନ ସମୟରେ ସେ ଉପସ୍ଥିତ ଥିଲେ । ତାଙ୍କୁ ବ୍ଲକ୍‌ର ସ୍ୱେଚ୍ଛାସେବୀ ବିଦାୟ ଦେବାବେଳେ ସାକ୍ଷରତା ଚିହ୍ନ ସମ୍ୱଳିତ ଏକ ରୂପାର ଫଳକ ଉପହାର ଦେବାବେଳେ ସେ ଏହାକୁ ଦେଖି ନିଜର କୋହ ସମ୍ୱରଣ କରିପାରି ନାହାନ୍ତି । ଆଖିରୁ ଅଶ୍ରୁଧାର ଅବାରିତ ଭାବେ ବୋହି ଚାଲିଛି । ସେ କହିଛନ୍ତି, ଯେ ପର୍ଯ୍ୟନ୍ତ ବଞ୍ଚି ରହିଥିବି, ସେ ପର୍ଯ୍ୟନ୍ତ ଏହି ଫଳକକୁ ସାଇତି ରଖିଥିବି ଏବଂ ବରପାଲି ବ୍ଲକ୍‌ର ସାକ୍ଷରତା ଅଭିଯାନ ଏବଂ ଏ ଅଭିଯାନରେ ସଂପୃକ୍ତ ସ୍ୱେଚ୍ଛାସେବୀମାନଙ୍କୁ ମନେ ରଖିଥିବି ।

## ତୃତୀୟ କର୍ମୀ :

ଆମ ପରିଦର୍ଶନ ଆରମ୍ଭ ହେଲା ରାତି ୬.୩୦ ମିନିଟ୍‌ରେ । ଶେଷ ହେଲା ରାତି ୩ଟା ବେଳେ । ଦୀର୍ଘ ସମୟ ଧରି ଆମମାନଙ୍କ ସହିତ ଗାଇଡ୍ ଭାବେ ଗାଁରୁ ଗାଁକୁ ବୁଲାଉଥିବା, କେନ୍ଦ୍ରମାନଙ୍କରେ ସଭା ସଂପାଦନ କରୁଥିବା, ଗାଁର ଶିକ୍ଷକ, ସ୍ୱେଚ୍ଛାସେବୀ ଏବଂ ଗ୍ରାମବାସୀଙ୍କୁ ନିରନ୍ତର ଉପଦେଶ ଦେଉଥିବା ବ୍ୟକ୍ତିଜଣକ ହେଉଛନ୍ତି ଯଦୁମଣି । ପେଷାରେ ଶିକ୍ଷକ । ବର୍ତ୍ତମାନ ବିଦ୍ୟାଳୟ ପରିଦର୍ଶକ । ସେ ହେଲେ ଅଭିଯାନର ''ରିସୋର୍ସ ପର୍ସନ'' ବା ସମ୍ବଳ ଅଧିକାରୀ । କର୍ମଠ, ଚଳଚଞ୍ଚଳ । ଉତ୍ସାହରେ ଭରପୂର । ସ୍ୱେଚ୍ଛାସେବୀମାନଙ୍କ ପାଇଁ ଆନ୍ତରିକତାରେ ପରିପୂର୍ଣ୍ଣ । କ୍ଷେତ୍ରରେ କାର୍ଯ୍ୟରତ ପ୍ରତ୍ୟେକ ସ୍ୱେଚ୍ଛାସେବୀ ସହିତ ବ୍ୟକ୍ତିଗତ ପରିଚୟ । ବ୍ଲକ୍‌ସ୍ତରରେ ସ୍ୱେଚ୍ଛାସେବୀମାନଙ୍କୁ ଟ୍ରେନିଂ ଦେବା, ଜିଲ୍ଲା ଅଧିକାରୀ ଏବଂ ବ୍ଲକ୍ ଅଧିକାରୀଙ୍କ ସହିତ ନିରନ୍ତର ସଂପର୍କ ରକ୍ଷା କରିବା, କର୍ମୀମାନଙ୍କ ଭିତରେ କର୍ତ୍ତବ୍ୟବୋଧର ଜାଗରଣ କରିବା, ସାକ୍ଷରତା କାର୍ଯ୍ୟକ୍ରମକୁ ନିଜର କାର୍ଯ୍ୟଭାବେ ବିଚାର କରିବା ପାଇଁ ପ୍ରେରଣା ଦେବା ଆଦି ସମସ୍ତ ମହାନ୍ ଭାବଧାରାର ସ୍ଥାନୀୟ ଉତ୍ସ ହେଲେ ଶ୍ରୀ ବିଶି । ପ୍ରତ୍ୟେକ କେନ୍ଦ୍ରରେ ସମୁଚିତ କାର୍ଯ୍ୟକ୍ରମ । ସବୁଠାରେ ସୁଚିନ୍ତିତ ଯୋଜନା । ବରପାଲି ବ୍ଲକ୍‌ରେ ଏକ ସ୍ୱତନ୍ତ୍ର କାର୍ଯ୍ୟଶୈଳୀ ଦେଖିବାକୁ ମିଳିଲା । ନାଁ ହେଲା, ''ଟାସ୍କଫୋର୍ସ'' । ଏ ଦଳରେ ବକ୍ତା, ନାୟକ ଓ ବାଦ୍ୟକାରଙ୍କୁ ସାମିଲ କରାଯାଇଛି । ଯେଉଁ ଗାଁରେ କାମ ଧିମେଇ ଯିବାର ଦେଖାଯାଏ, ସେଠି ଏ ଦଳ ହାଜର । ଘଣ୍ଟେ ଦୁଇଘଣ୍ଟାର କାର୍ଯ୍ୟକ୍ରମ କରିଦେଲେ ମୃତ ପ୍ରାଣରେ ଜୀବନ ସଂଚାର କରିବାର କ୍ଷମତା ରଖିଛନ୍ତି ଏ ଦଳର କର୍ମୀବୃନ୍ଦ । ଗାଁ ଭିତରର ସ୍କୁଲ ଶିକ୍ଷକମାନଙ୍କୁ ଏ ଅଭିଯାନରେ ସାମିଲ କରାଯାଇଛି । ଏ ଦିଗରେ ନିଜର ବ୍ୟକ୍ତିଗତ ପ୍ରଭାବ ସହିତ ଶିକ୍ଷାକ୍ଷେତ୍ରକୁ ମଧ ସମ୍ମିଳିତ କରିଛନ୍ତି ଶ୍ରୀ ବିଶି । ଜିଲ୍ଲା କାର୍ଯ୍ୟର ସମୀକ୍ଷା ହୋଇଥିଲା ପ୍ରାୟ ଦୁଇମାସ ତଳେ । ସମୀକ୍ଷାରେ ଜଣାପଡ଼ିଥିଲା ବରପାଲି ବ୍ଲକ୍ ସମଗ୍ର ଜିଲ୍ଲାରେ ଆଗୁଆ ସ୍ଥାନ ହାସଲ କରିଛି ।

## ଚତୁର୍ଥ କର୍ମୀ :

ସାକ୍ଷରତା ଅଭିଯାନରେ ପ୍ରମୁଖ ପ୍ରଶିକ୍ଷକ ବା ''ମାଷ୍ଟର ଟ୍ରେନର''ଙ୍କର ମନୋନୟନ ଏକ କଠିନ କାର୍ଯ୍ୟ । ଚେନ୍ ଭିତରେ ଏକ ବିଶେଷ କଡ଼ି ଉପରର ଯୋଜନା ଏବଂ ତତ୍ ସହିତ ନିର୍ଦ୍ଦେଶଗୁଡ଼ିକୁ ତଳସ୍ତରର ସ୍ୱେଚ୍ଛାସେବୀମାନଙ୍କୁ ଠିକ୍ ଭାବେ ବୁଝାଇବା, ସ୍ୱେଚ୍ଛାସେବୀମାନଙ୍କର ଛୋଟ ଛୋଟ ସମସ୍ୟା ଗୁଡ଼ିକର ସମାଧାନ କରିବା, ପ୍ରଶ୍ନଗୁଡ଼ିକର ଉପଯୁକ୍ତ ଉତ୍ତର ଦେବା, ସେମାନଙ୍କର ପ୍ରେରଣାର ସ୍ରୋତକୁ ଜୀବନ୍ତ ରଖିବା, ଏ ସମସ୍ତ କାର୍ଯ୍ୟ ନ୍ୟସ୍ତ ଥାଏ ଏହି ସ୍ତରର କର୍ମୀଙ୍କ ଉପରେ । ବରପାଲି ବ୍ଲକ୍‌ର ଏହି ସ୍ତରର ଜଣେ କର୍ମୀ ହେଲେ ଶ୍ରୀ ଲକ୍ଷ୍ମୀଧର ସେଠ୍ । ବୟସ ପଚାଶ ସେପଟେ । ମାର୍ଜିତ ବେଶଭୂଷା । କେଶ ବିନ୍ୟାସ । ଭାଷା ପ୍ରୟୋଗ ଏବଂ ଭାଷଣ ଚାତୁରୀ । ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଭାବେ କାର୍ଯ୍ୟରତ । ଦୀର୍ଘ ତିରିଶ ବର୍ଷର ଶିକ୍ଷକତା ଭିତରେ ଅଞ୍ଚଳର ଅଧିକାଂଶ ହେଉଛନ୍ତି ତାଙ୍କର ଛାତ୍ର । ପ୍ରାଣବନ୍ତ ମଣିଷ ଜଣେ । ସ୍ୱେଚ୍ଛାସେବୀଙ୍କ ଗହଣରେ ସେମାନଙ୍କ କାନ୍ଧରେ ହାତରଖି ସେ ଯେତେବେଳେ କହନ୍ତି, ''ଏମାନେ ସମସ୍ତେ ମୋର ଛାତ୍ର, ମୋ କଥା ଶୁଣନ୍ତି''– ସେତେବେଳେ ତାଙ୍କ ମୁହଁରେ ସ୍ୱତଃ



ଫୁଟିଉଠେ ଜଣେ ସଫଳ ଶିକ୍ଷକର ଆତ୍ମ ତୃପ୍ତିର ହସ । ଆଖିରେ ନାଚିଉଠେ ଜଣେ ବୟସ୍କ ବ୍ୟକ୍ତିଙ୍କର ସ୍ୱାଭିମାନ ଭରା ଝଲକ । ବିଳମ୍ବିତ ରାତ୍ରିରେ ପ୍ରାୟ ପଚାଶ ଜଣ ଯୁବତୀ ସ୍ୱେଚ୍ଛାସେବୀଙ୍କର ନିର୍ଭୟ ଅଂଶ ଗ୍ରହଣ ଦେଖି ସ୍ୱତଃ ମନରେ ପ୍ରଶ୍ନ ଉଙ୍କିମାରିଲା ଯେ, ଏ ପ୍ରକାର ନିର୍ଭୟ ଦୃଶ୍ୟ ଏ ଗ୍ରାମାଞ୍ଚଳରେ କିପରି ସମ୍ଭବ ହୋଇଛି ? ପ୍ରଶ୍ନର ଉତ୍ତର ମିଳିଥିଲା । ପ୍ରଥମ ହେଲା- ଗୋଟିଏ ଗାଁରୁ ଦଳଟିଏ ଝିଅ ଏକ ସାଥିରେ ଅଛନ୍ତି ଏବଂ ପୁଅ ସ୍ୱେଚ୍ଛାସେବୀମାନେ ମଧ୍ୟ ସେମାନଙ୍କର ଭାଇ, କକେଇ ବା ସଂପର୍କୀୟ । ତେଣୁ ଭୟ ନାହିଁ । ଦ୍ୱିତୀୟ ଏବଂ ପ୍ରମୁଖ ଉତ୍ତର ହେଲା- ଦଳପତି ଲକ୍ଷ୍ମୀଧର ସେଠ୍‌ଙ୍କ ଉପସ୍ଥିତି । ଇଂରାଜୀରେ ଯାହାକୁ କୁହାଯାଏ ''ଫାଦର ଫିଗର'' ।

## ପଞ୍ଚମ କର୍ମୀ :

ଝିଅଟିଏ, ଗଲା ମାସେ ତଳେ ବିବାହ ହୋଇଛି । ''ପାଟ କୁଲୁଣ୍ଡା'' ଗାଁର ଝିଅ ସେ । ଗାଁରୁ ୨୫ କିଲୋମିଟର ଦୂରରେ ଶ୍ୱଶୁରଘର । ବିବାହ ସମୟରେ ଗାଁର କେନ୍ଦ୍ର ଗୁଡ଼ିକରେ ପ୍ରଥମ ପାଠ ଶେଷ ହୋଇ ଆସୁଥିଲା । ଦ୍ୱିତୀୟ ପାଠ ଆରମ୍ଭ ହୋଇ ନଥାଏ । ତିନୋଟି କେନ୍ଦ୍ରର ଦାୟିତ୍ୱ ତା' ଉପରେ । ବିବାହ ପରେ ସ୍ୱାମୀ ଓ ଶାଶୁଘରର ଆକର୍ଷଣ ଅପେକ୍ଷା ଗାଁର ଶିକ୍ଷା କେନ୍ଦ୍ରର ଆକର୍ଷଣ ତା'ପାଇଁ ଅଧିକ ହୋଇ ପଡ଼ିଛି । ଶାଶୁ ଓ ଶ୍ୱଶୁରଙ୍କୁ ବୁଝାଇ ଶୁଝାଇ ଅନୁମତି ନେଇ ସ୍ୱାମୀଙ୍କୁ ସାଥିରେ ଧରି ନିଜ ଗାଁକୁ ଫେରି ଆସିଛି । ଦ୍ୱିତୀୟ ପାଠ ଶେଷ କରି ଶାଶୁ ଘରକୁ ଫେରିବ । ନାଁ ତା'ର ମମତା । ମମତା ରାଣୀ ସାହୁ । କୃଷକ ପରିବାରର ଅଠର- ଉଣେଇଶ ବର୍ଷର ମାଟ୍ରିକ୍ ପାସ୍ କରିଥିବା ଝିଅଟି । କି ଉତ୍ସାହ, କି ଆଗ୍ରହ ! ଗାଁ ଭିତରେ ଝିଅମାନଙ୍କୁ ଏ କାମରେ ଟାଣି ଆଣିବାରେ ତା'ର ମୁଖ୍ୟ ଭୂମିକା ଅଛି । ତା'ର ସ୍ୱାମୀ ଏସବୁ ଦେଖିଛନ୍ତି । ବିହ୍ୱଳ ହୋଇ ପଡିଛନ୍ତି । ନିଜ ସ୍ତ୍ରୀକୁ ଏ କ୍ଷେତ୍ରରେ ଛାଡ଼ିଦେଇ ପ୍ରାୟ ଏକ ସପ୍ତାହ ରହଣିପରେ ସେ ନିଜ ଗାଁକୁ ଫେରି ଯାଇଛନ୍ତି । ମମତା ତାର କାମରେ ପୂରା ଦମ୍‌ରେ ଲାଗି ପଡ଼ିଛି । ପ୍ରାୟ ଦୁଇ ମାସରେ ଯେତେବେଳେ ଶାଶୁଘରକୁ ଫେରିଛି, ସେତିକିବେଳେ ଗାଁରୁ ଦୁଇଟି ଟ୍ରେକରରେ ଭର୍ତ୍ତିହୋଇ ତିରିଶଜଣ ସ୍ୱେଚ୍ଛାସେବୀ ପୁଅ ଓ ଝିଅ ମିଶି ତାକୁ ଛାଡିବାକୁ ଯାଇଛନ୍ତି ।

ତା'ର ଶ୍ୱଶୁରଘର ଗାଁରେ ସାକ୍ଷରତା ଅଭିଯାନର ''ସୂତ୍ରପାତ କରିବା ପାଇଁ।'' ଦୁଇଦିନ ରହଣି ପରେ ପ୍ରାରମ୍ଭିକ ବାତାବରଣ ନିର୍ମାଣ କରି ସେମାନେ ନିଜ ଗାଁକୁ ଫେରି ଆସିଛନ୍ତି । ସେ ଗାଁଟି କିନ୍ତୁ ବରପାଲି ବ୍ଲକ୍‌ର ସୀମା ବାହାରେ । ତେଣୁ ବରପାଲିର ଉତ୍ସାହ ସେଠାରେ ମିଳିନି । ମମତା ଭଳି ଝିଅଟିଏ ପାଇ କେବଳ ତା'ର ବାପା, ମା' ଏବଂ ଶ୍ୱଶୁର, ଶାଶୁ ନୁହଁନ୍ତି, ''ସମଗ୍ର ପାଟକୁଲୁଣ୍ଡା'' ଗାଁ ଆଜି ଧନ୍ୟ ହୋଇଛି ।



ଉପରୋକ୍ତ ପାଞ୍ଚଜଣ କର୍ମୀ ସମଗ୍ର ବରଗଡ଼ ଜିଲ୍ଲାର ତଥା ବରପାଲି ବ୍ଲକ୍ ଭିତରେ କାର୍ଯ୍ୟରତ କର୍ମୀମାନଙ୍କର ପ୍ରତିନିଧି ମାତ୍ର ।

ନିର୍ଦ୍ଦେଶକ,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ବିଶ୍ୱାସ ଆସି ଯାଇଛି

ଡକ୍ଟର ପ୍ରଫୁଲ ଚନ୍ଦ୍ର ମହାପାତ୍ର



ଦୟାନଦୀକୂଳରେ ରାମପୁର ନାମରେ ଗୋଟିଏ ଗାଁ ଅଛି । ସକାଳେ ସେହି ଗାଁର ସ୍ତ୍ରୀଲୋକମାନେ ନଦୀକୁ ଗାଧୋଇ ଆସନ୍ତି । ସେମାନଙ୍କ ଦଳର ନେତା ହେଉଛନ୍ତି ପଦି ଆଈ । ତାଙ୍କୁ ସମସ୍ତେ ମାନନ୍ତି । ସେ ଗାଁର ବଡ଼ ଠାରୁ ସାନ ପର୍ଯ୍ୟନ୍ତ ସମସ୍ତଙ୍କର ଆଦରର ଆଈ । ନଦୀ କୂଳରେ ସ୍ତ୍ରୀ ଲୋକମାନେ ଘରଠାରୁ ଆରମ୍ଭ କରି ଗାଁର ହାନିଲାଭ ଭଲମନ୍ଦ ବିଷୟରେ ଆଲୋଚନା କରିଥାଆନ୍ତି । ପଦି ଆଈ ସେମାନଙ୍କର ବିପଦ ଆପଦ ବେଳେ ସାହାଭରସା ହୋଇଥାଅନ୍ତି । ଏପରିକି ସେମାନଙ୍କର ଘରେ ବା ବାହାରେ ଦେଖାଯାଉଥିବା ଅସୁବିଧା ଗୁଡ଼ିକୁ ଦୂରକରିବା ପାଇଁ ଠିକ୍ ଉପଦେଶ ଦେଉଥିବାରୁ ପଦିଆଈଙ୍କୁ ସମସ୍ତେ ଭଲପାଆନ୍ତି ।

ଦିନକର କଥା । ଗାଧୁଆ ତୁଠରେ ହଠାତ୍ ପଦିଆଈଙ୍କ ନଜର ମିନୁ ଉପରେ ପଡ଼ିଗଲା । ତାଙ୍କୁ ଯେପରି ଲାଗିଲା ମିନୁର ହସ ହସ ମୁହଁରୁ ହସ ଲିଭିଯାଇଛି । ମୁହଁଟି ଶୁଖି ଯାଇଛି । ମିନୁ ନୂଆ ବାହା ହୋଇଛି, ହେଲେ ତାର ସ୍ୱାମୀ ରାମ ଆଜିକୁ ପନ୍ଦର ଦିନ ହେଲା ଘରଛାଡି ତାର କାମ ଜାଗା ରାଉରକେଲାକୁ ଚାଲିଯାଇଛି । ମିନୁର ଶୁଖିଲା ମୁହଁକୁ ଦେଖି ପଦିଆଈ ପଚାରିଲେ, ହଇଲୋ ମିନୁ ! ରାମ କ'ଣ ଚିଠି ଦେଇନିକି ? ତାର ଦେହ ଭଲ ଅଛିତ ? ତୋ ମୁହଁ କାହିଁକି ଶୁଖି ଯାଇଛି ।

ମିନୁ ଲାଜରା ହୋଇ କହିଲା, ବୁଝିଲ ଆଈ, କାଲି ସେ ମୋ ପାଖକୁ ଖଣ୍ଡିଏ ଚିଠି ଦେଇଛନ୍ତି । ଡାକବାଲା ଆଣି ଚିଠିଟା ଦେଲା । ହେଲେ......

ଆଈ କହି ଉଠିଲେ, ଆଲୋ କ'ଣ ହେଲା ? କାହିଁକି ରାମର ଦେହ ପା' ଖରାପ ଅଛି ନାଁ କଣ ? ଏଥର ମିନୁ କହିଲା, ନାଇଁମ ଆଈ କଣ କହିବି । ବଡ଼ ଲାଜର କଥା ଯେ, ମୁଁ ସେ ଚିଠିକୁ ପଢ଼ି ପାରୁନାହିଁ । କାରଣ ମୁଁ ପଢ଼ା ଲେଖା ଜାଣି ନାହିଁ । ପିଲାଦିନେ

ସ୍କୁଲକୁ ନଯିବା ପାଇଁ କାନ୍ଦୁଥିଲି । ଏବେ ତା ଫଳ ଭୋଗୁଛି । କାହାକୁ ସେ ଚିଠି ପଢ଼ାଇବି ବା ଚିଠିର ଉତ୍ତର କାହା ଦ୍ୱାରା ଲେଖିବି ଭାବି ପାରୁ ନାହିଁ । ମୋର ଏବେ ଆଖିଥାଇ ଆଖି ନଥିଲା ପରି । ଆଈ ମତେ ଟିକିଏ ବୁଦ୍ଧି ଦେ, ମୁଁ କଣ କରିବି ?



ଏତିକିବେଳେ ଟୁନି କହିଲା, ବୁଝିଲ ଆଈ, ମୁଁ କାଲି ଯାହା ହଇରାଣ ହୋଇଛି ନକହିଲେ ଭଲ । କାଲି ପୁରୀ ଯାଇଥିଲି । ଗଲାବେଳେ ଗାଁ ମୁଣ୍ଡରୁ ବସ୍‌ରେ ବସିଗଲି । ହେଲେ ଫେରିଲା ବେଳକୁ କେଉଁ ବସ୍ ଆମ ଆଡ଼େ ଆସିବ ଜାଣି ପାରିଲି ନାହିଁ । ବସ୍ ଆଗରେ କେଉଁଠିକୁ ଯିବ ଲେଖାହୋଇଥିଲେ ମଧ୍ୟ ପାଠ ପଢ଼ିନଥିବାରୁ ଭାରି ହଇରାଣ ହେଲି । ଲାଜରେ କାହାକୁ ନପଚାରି ଗୋଟିଏ ବସ୍‌ରେ ଭୁଲ୍‌ରେ ବସିଗଲି । ବାଟରେ ଯେବେଳେ ଟିକଟବାଲା ଟିକଟ କାଟିବାକୁ ଆସିଲା, ସେତେବେଳେ ମୁଁ ଜାଣିଲି ଯେ ଭୁଲ୍ ବସ୍‌ରେ ବସିଛି । ବସ୍‌ରୁ ବାହାରିଲା ବେଳକୁ ସମସ୍ତେ ତ ହସିଲେ । ଜଣେ ତା ଭିତରୁ କହିଲା, ବସ୍‌ରେ ବସିବା ଆଗରୁ ବସ୍ କେଉଁଠିକୁ ଯାଉଛି, ପଢ଼ିକରି ବସୁନାହଁ । ସମସ୍ତଙ୍କୁ କାହିଁକି ହଇରାଣ କରୁଛ । ପାଠ ଦି'ଅକ୍ଷର ନପଢ଼ିଥିବାରୁ ଏକଥା ଶୁଣିବାକୁ ପଡ଼ିଲା । ଏଣୁ ଆଈ ତୁ ବତା ମୁଁ ଏବେ କ'ଣ କରିବି ?

ଏତିକି ବେଳେ ସନିଆର ମା କହିଲା, ଆଲୋଟୁନି ! ମୋ ଦୁଃଖ କ'ଣ କହିବି ? ମୁଁ ଅପାଠୁଆ ବୋଲି ମୋ ପୁଅ ସବୁବେଳେ ମୂରୁଖ ମୂରୁଖ ବୋଲି ଓଲଗୁଣା ଦେଉଛି । ସେ କହୁଛି ମୁଁ ଯଦି ଟିକିଏ ପାଠ ପଢ଼ିଥାଆନ୍ତି, ତାକୁ ପାଠ ପଢ଼ିବାରେ ସାହାଯ୍ୟ କରିଥାଆନ୍ତି । ଅନ୍ୟ ପାଠୋଇ ମା,ମାନଙ୍କ ପରି ପଢ଼ାରେ ହାତ ପଟାଇ ଥାଆନ୍ତି । ଛାଡ଼, ଏପରି କଥା ନିଜ ପୁଅଠାରୁ ଶୁଣିବାକୁ ମୋ ଭାଗ୍ୟରେ ଅଛି ।

ଏଥର ଗୀତା କହିଲା, ବୁଝିଲୁ ଆଈ ! କାହିଁକି ପିଲାଦିନେ ଦି'ଅକ୍ଷର ନପଢ଼ିଲି ? ଫଳରେ ଆଜି ହରକତ ହେବାକୁ ପଡୁଛି । କାଲି ହାଟକୁ ବାଡ଼ିରୁ ତୋଳି ବୋଝେ ବାଇଗଣ ବିକିବାକୁ ନେଇଥିଲି । ବାଟରେ ବେପାରୀ ବାଇଗଣ କିଣିନେବାକୁ ଚାହିଁଲା । ସେ କ'ଣ ଓଜନ କଲା କେଜାଣି ମତେ ମାତ୍ର କୋଡିଏଟି ଟଙ୍କା ଦେଲା । ଯେତେ ନେହୁରା ହୋଇ ଆଉ ପାଞ୍ଚଟଙ୍କା ଦେବାପାଇଁ କହିଲି ସେ ଶୁଣିଲା ନାହିଁ । ମୁଁ ବି ଜାଣି ପାରିଲି ନାହିଁ ସେ କଣ ବଟକରା ପକାଇଲା । ମୋତେ ଲାଗୁଛି ସେ ଓଜନରେ ଠକିଲା ।

ମରୁଆ କହିଲା, ଆଈଲୋ ! ମୋ କଥା ନକହିଲେ ଭଲ । ରବିର ବାପା ମଲାବେଳକୁ ତାଙ୍କୁ ଡାକ୍ତର ଦେଖାଇବା ପାଇଁ ସାହୁକାରଠାରୁ ପଚାଶ ଟଙ୍କା ଧାର ଆଣିଥିଲି । ସେତେବେଳେ ସେ ଗୋଟିଏ ସାଧା କାଗଜରେ ମୋ ଟିପ ନେଇ ଯାଇଥିଲ । ସେ କଣ ଲେଖିଲା ମୁଁ ଜାଣିନି । ତାକୁ ମୁଁ ପ୍ରତି ମାସରେ ପାଞ୍ଚଟଙ୍କା ଲେଖାଁଏ ଶୁଝୁଛି । ପ୍ରାୟ ତିନି ବରଷ ହୋଇଗଲାଣି । ମୁଁ ଯେତେବେଳେ ମୋ କାଗଜଟି ଫେରାଇ ଦେବାକୁ କହୁଛି, ସେ ମୋତେ ଗୋଟିଏ କଥା କହୁଛି, ମୋ ଉପରେ ଆହୁରି ପଇସା ବାକି ଅଛି । ମୁଁ ଯଦି ଦିଅକ୍ଷର ପଢ଼ିଥାଆନ୍ତି ତେବେ ସେ କାଗଜରେ କଣ ଲେଖାହୋଇଛି ଜାଣି ଥାଆନ୍ତି । ଆଉ ଏ ସାହୁକାର ମୋ ନାକରେ ଦଉଡି ଲଗାଇ ଏତେ ହରକତ କରି ପାରନ୍ତା ନାହିଁ ।

ସାରିଆ ମରୁଆ କଥା ଶୁଣି କହିଲା, ବୁଝିଲ ଆଈ କାଲି ମୁଁ ବୁଝି ପାରିଲି ପାଠ ନପଢ଼ି କେତେ ଭୁଲ୍ କରିଛି । କାଲି ଯଦି ରାମ ବାବୁଙ୍କ ଝିଅ ଶାନ୍ତି ଠିକ୍ ବେଳରେ ମୋ ଘରେ ପହଞ୍ଚିନଥାନ୍ତା ବଡ଼ ଅଘଟଣଟିଏ ମୋ ଘରେ ଘଟି ଥାଆନ୍ତା । ତୁମେତ ଜାଣିଛ ମୋ ପୁଅକୁ ତିନିଦିନ ହେଲା ଜର, ଆଉ ଝିଅକୁ ଦୁଇଦିନ ହେଲା ଝାଡ଼ା ହେଉଛି । ଡାକ୍ତର ବାବୁଙ୍କଠାରୁ ଦୁଇଜଣଙ୍କ ପାଇଁ ଔଷଧ ଆଣିଥିଲି । ହେଲେ ଘରକୁ ଆଣିଲାବେଳକୁ

ଦୁଇଟି ଯାକ ଭୁଲ୍‌ରେ ଏକାଠି ହୋଇଗଲା । ପିଲାଙ୍କୁ ଔଷଧ ଦେବାକୁ ଗଲାବେଳକୁ ଜାଣିପାରିଲି ନାହିଁ କେଉଁଟା ଝାଡା ଔଷଧ ଆଉ କେଉଁଟି ଜର ଔଷଧ । ପାଖରେ କିଏ ଥିଲେ ସିନା ପଚାରି ଥାଆନ୍ତି ! ଠାକୁରଙ୍କୁ ଡାକି ଯେତେବେଳେ ପୁଅକୁ ଔଷଧ ଦେବାକୁ ବାହାରେ, ଶାନ୍ତି ଆସି ପହଞ୍ଚିଲା । ମୁଁ ଶାନ୍ତିକୁ ପଚାରିଲି, ହଇଲୋ ଶାନ୍ତି, ଏ ପୁଡିଆଟା ପୁଅରତ ? ତାକୁ ଦେଖି ଶାନ୍ତି କହିଲା, ଖୁଡ଼ି ତୁମେ କ'ଣ କରୁଥିଲ ? ପୁଅକୁ ଝିଅର ଔଷଧ ଆଉ ଝିଅକୁ ପୁଅର ଔଷଧ ଦେବାକୁ ଯାଉଥିଲ । ସେତିକି ବେଳଠାରୁ ଭାବୁଛି ଯଦି ଦି'ଅକ୍ଷର ପଢ଼ିଥାଆନ୍ତି ଏ ଭୁଲ୍ କେବେ ହୋଇନଥାନ୍ତା । ଇଛା ହେଉଛି ଦି'ଅକ୍ଷର ପଢ଼ିବା ପାଇଁ । ଏ ବୟସରେ ଆଉ ତ ସ୍କୁଲକୁ ଯାଇ ହେବନାହିଁ । ତେଣୁ ଆଇ, ତୁମେ ଗୋଟିଏ ବାଟ ବାହାର କର । କ'ଣ କଲେ ଆମେ ଏ ବୟସରେ ପଢ଼ି ପାରିବା ?

ଠିକ୍ ଏହି ସମୟରେ ଶାନ୍ତି ନଈକୁ ଗାଧୋଇବାକୁ ଆସିଲା । ତାକୁ ଦେଖିଲା ମାତ୍ରକେ ଆଈ କହିଲେ, ହଇଲେ ଶାନ୍ତି, ତୁ ଶହେ ବରଷ ବଞ୍ଚିବୁ । ତୋ କଥା ନସରୁଣୁ ତୁ ଆସି ହାଜର । ଆଲୋ ନାତୁଣି ତୋରତ କଲେଜ ଛୁଟିଅଛି । ଆମକୁ ଟିକିଏ ଲେଖାପଢ଼ା ଶିଖାଇ ଦିଅନ୍ତୁ ନାହିଁ ।

ଏକଥା ଶୁଣି ଶାନ୍ତି ହସି ହସି କହିଲା, ଆଈ ତୁମେ କହିବ ମୁଁ ମାନିବିନି । ମୋର ତ ଏଇଲେ ଦୁଇମାସ ଛୁଟି ଅଛି । ଆମେ ଖରାବେଳେ ତୁମଘରେ ଏକାଠି ହେବୁ । ମୋତେ ଲାଗୁଛି ତୁମେ ସବୁ ଲେଖାପଢ଼ା ଶିଖିଯିବ । କାଲି ଗୁରୁବାର ଅଛି, ପଢ଼ା ଆରମ୍ଭ କରିବା । ଆଈ ତୁମେ ମାମୁଁଙ୍କୁ କୁହ ସେ ଆମପାଇଁ ବ୍ଲକକୁ ଯାଇ ବହି ସିଲଟ ମାଗଣାରେ ନେଇ ଆସିବେ ।

ଠିକ୍ ଦୁଇମାସ ପରେ ଦେଖାଗଲା ସମସ୍ତଙ୍କ ମନରେ ହସର ଢ଼େଉ । ମିନୁ ଚିଠିପଢ଼ି ପାରୁଛି ଏବଂ ଲେଖି ପାରୁଛି । ଟୁନିର ବସ୍ ଚିହ୍ନିବାରେ ଭୁଲ୍ ହେଉନାହିଁ । ସନିଆ ଆଉ ତା' ମାଆକୁ ମୂରୁଖ ବୋଲି କହି ପାରୁନାହିଁ । ଗୀତାକୁ ବେପାରୀ ଠକି ପାରୁନାହିଁ । ମଗୁଆକୁ ସାହୁକାର କାଗଜଟି ଫେରାଇ ଦେଇଛି ଏବଂ ସାରିଆର ଔଷଧ ଚିହ୍ନିବାରେ ଅସୁବିଧା ହେଉନାହିଁ । ସମସ୍ତଙ୍କ ମନରେ ନିଜ ଉପରେ ବିଶ୍ୱାସ ଆସିଯାଇଛି ।

କାର୍ଯ୍ୟକ୍ରମ ସଂଯୋଜକ,
ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର,
ଓଡ଼ିଶା, ଭୁବନେଶ୍ୱର

# ଏବେ କହୁଅଛି ଶୁକୁରୁ ଭୋଇ



ରସରାଜ ଅଚ୍ୟୁତ ପୁରୋହିତ

ଡାଲ୍‌ଖାଇରେ
ବକଟି ଗାଆଁର ଶୁକୁରୁ ଭୋଇ
ପୁଅ ପାଞ୍ଚ ତା'ର ଝିଅ ବି ଦୁଇ
କି କଥା ହେଲା
ବଡ଼ ପରିବାର ବେଶି ଝାମେଲା
ବାନ୍ଧିଲା ବେଳକୁ ବନ୍ଧରେ ପାଣି ନଥିଲା କି ଡାଲ୍ ଖାଇରେ -

ଡାଲ୍ ଖାଇରେ
ମାନିଲା ନାହିଁ ସେ କଥା କାହାର
ବଢ଼ାଇ ଚାଲିଲା ତା' ପରିବାର
ଏବେ ଭାବୁଛି
ଜାଣି ଜାଣି ବଡ଼ ଭୁଲ୍ କରିଛି
ନଅ ପ୍ରାଣୀ ପେଟ ପୋଷିବା କଷ୍ଟ ହେଉଛି କି ଡାଲ୍ ଖାଇରେ -

ଡାଲ୍ ଖାଇରେ
ଶୁକୁରୁ ଭୋଇର ଭାରିଜା ମାଳା
ବାର ବରଷରେ ସାତଟି ପିଲା
ଦେହ ଦୁର୍ବଳ
ରୋଗେ ପଡ଼ି ହୁଏ କି କଲବଲ
ଯେତେ ଓଉଷଧ ଖାଇଲେ ବି ଦେହ ହୁଏନି ଭଲ କି ଡାଲ୍ ଖାଇରେ-
ପୁଅ ଛାଡ଼ିଲାଣି ଇସ୍କୁଲ୍ ପଢ଼ା

ପଢ଼ିବା ପାଇଁ ତ ପଇସା ଲୋଡ଼ା
ପେଟକୁ ଦାନା
ପିନ୍ଧିବା ପାଇଁକି ଦେହକୁ କନା
ସବୁ ରୋଜଗାର ଘର ଖରଚକୁ ନିଅଣ୍ଟ ସିନା କି ଡାଲ୍ ଖାଇରେ -

ଡାଲ୍ ଖାଇରେ
ପୂନେଇଁ ପରବ ବରଷ ସାରା
ନୂଆଖାଇ ଆଉ ଦୋଳ ଯାତରା
ଯିବାକୁ ବୁଲି
ପିଲାଏ ତାହାର କରନ୍ତି ଅଳି
ଯିବା ଯିବା କହି ଶେଷକୁ ଶୁକୁରୁ ଦିଅଇ ଟାଳି କି ଡାଲ୍ ଖାଇରେ-

ଡାଲ୍ ଖାଇରେ
ଏବେ କହୁଅଛି ଶୁକୁରୁ ଭୋଇ
''ଆମେ ଦୁଇ ଆଉ ଆମର ଦୁଇ''
ଆମକୁ ଦେଖି
ଏଇ କଥା ଭାଇ ମନରେ ରଖି
ଛୋଟ ପରିବାର ଆଜି ଦୁନିଆରେ ସବୁଠୁଁ ସୁଖୀ କି ଡାଲ୍ ଖାଇରେ-



# ଜମିଦାରଙ୍କ ନ୍ୟାୟ

ଜଗଦାନନ୍ଦ ଛୁରିଆ



ବଣ ପାହାଡ଼ ଘେରା ଗାଆଁଟେ ଜରାସିଂହା । ପାଖକୁ ନଈଟେ । ବର୍ଷା ତିନି ଚାରିମାସ ଛାଡ଼ି ବାକି ଦିନମାନ ଶୁଖିଲା ଥାଏ । ଆଗ ଏଠି ଜମିଦାର ଶାସନ କରୁଥିଲେ । ଏଣୁ ଏଠିକାଲୋକେ ଗାଆଁ ଲୋକଙ୍କଠୁ ସବୁ କଥାରେ ଟିକେ ଆଗୁଆ । ଗାଆଁରେ ତ କାହିଁ କେତେ ଦିନରୁ ଓଡ଼ିଆ ସ୍କୁଲ ଥିଲା । ଜମିଦାରୀ ଚାଲିଗଲାବେଳେ, ଜମିଦାର ମଥାକୁ ବଡ଼ିଆ ଅକଲଟେ ଢୁକିଲା । କହିଲେ, ହାଇସ୍କୁଲଟେ ବସାଇବା । ପିଲା ପାଠ ପଢ଼ିବେ । ଚାକିରି ବାକିରୀ କରିବେ । ଭଲରେ ରହିବେ । ନ ଜାଣିଲା ପାଞ୍ଚ କଥା ଜାଣିବେ । ଗାଆଁରେ ନାଆଁ ରଖିବେ ।

ହାଇସ୍କୁଲ ବସିଲା । ବାପା-ମା' ନାଆଁକୁ ଯୋଡ଼ି ସ୍କୁଲ ନାଆଁ ରଖିଲେ ଜମିଦାର । ସରକାରଙ୍କୁ କହିଲେ, ''ଜମିଦାରୀ ତ ନେଲ । ତା' ବଦଳରେ ଆମକୁ କିଛି ଦିଅ । ଇସ୍କୁଲକୁ ସରକାରୀ କରିଦିଅ ।'' ସରକାର କଥା ଶୁଣିଲେ । ନୂଆ ବସିଥିବା ସ୍କୁଲଟା ସରକାରୀ ହୋଇଗଲା । ଗାଆଁ ଓ ପାଖ ଗାଆଁର ମାଷ୍ଟର ରହିଲେ ଜଣେ ଦି'ଜଣ । ବାକି ଆସିଲେ ଦୂର ଜାଗାରୁ । ଏମିତି ଆସିଥିବା ଜଣେ ହେଲେ ନରହରି ବାବୁ ।

ନରହରି ବାବୁ ଯେଉଁଦିନ ପ୍ରଥମେ ଆସିଲେ, ସ୍କୁଲରେ ସେଦିନ ସଭାଟେ ବସିଥାଏ । ଗଣେଶ ପୂଜା ପାଖେଇ ଆସୁଥାଏ । ସେଥିପାଇଁ ସଭା ବସିଥାଏ । ପୂଜା କେମିତି କରାଯିବ ? କେଉଁ ପିଲା ସବୁଙ୍କୁ ପୂଜା ଭାର ଦିଆଯିବ ? ସେଥିପାଇଁ ତ ପାରିଲା ବାଲା ଚାହି । ଏସବୁ କଥା ଠିକଣା କରିବାକୁ ବସିଥାଏ ସଭା ।

ସବୁ ପିଲା ମତ ଦେଲେ ଅବ୍ଦୁଲ୍ ବାଗ ପୂଜା ସେକ୍ରେଟାରୀ ହେବ । ହେଡ୍‌ମାଷ୍ଟରେ କହିଲେ, ''ଅବ୍ଦୁଲ୍ ବାଗ ଠିଆ ହୁଅ ।'' ଅବ୍ଦୁଲ୍ ଠିଆ ହେଲା । ଡେଙ୍ଗା ହେଇ

ବଲୁଆ ପିଲାଟେ । ଚେହେରାରେ ତା'ର ଭକ୍ତି ଭାବଟେ ବାରି ହେଉଥିଲା । ହେଡ୍‌ମାଷ୍ଟର ପଚାରିଲେ, ''ତମେ ରାଜି ?'' ଅବ୍‌ଦୁଲ୍ କହିଲା, ''ହଁ'' । ସେକ୍ରେଟାରୀ ବନିଗଲା ଅବ୍‌ଦୁଲ୍ ।

ସେଇଠୁ ନରହରି ବାବୁଙ୍କ ଆଖି ଲାଖିଲା ଅବ୍‌ଦୁଲ ବାଗ୍ ଉପରେ । ଅବ୍‌ଦୁଲ୍ ପଠାଣ ନାଆଁ । ବାଗ୍ ତ ହିନ୍ଦୁ ସାଙ୍ଗିଆ । ଏମିତି ହେଲା କେମିତି ? ମନଟା ଗୁଡ଼େଇ ତୁଡ଼େଇ ହେଲା । ଗାଆଁର ଜଣେ ଶିକ୍ଷକ ଗୋପବନ୍ଧୁ ବାବୁ । ବୟସ୍କ ଲୋକ । ଭାରି ଜ୍ଞାନୀ ବି । ସ୍କୁଲ ଚାକିରି ସାଙ୍ଗକୁ ରୋଗୀ ଚିକିତ୍ସା କରନ୍ତି । ପାଞ୍ଚ ପଚିଶ ଗାଆଁରେ ଭାରି ନାଆଁ ତାଙ୍କର । ନରହରି ବାବୁ ତାଙ୍କୁ ଦିନେ ପଚାରିଲେ, ''ଅବ୍‌ଦୁଲ୍, ବାଗ ହେଲା କେମିତି ? ପଠାଣ ନାଆଁକୁ ହିନ୍ଦୁ ସାଙ୍ଗିଆ ! ଇଏ କେମିତି ହେଲା ?''

ଗୋପବନ୍ଧୁ ବାବୁ ମୁରୁକି ହସିଲେ । କହିଲେ, ''ୟା ପଛରେ ମଜା କଥାଟେ ଅଛି । ଗପ ପରି ଲାଗିବ । ଶୁଣ ...''

ପଠାଣ ଆଉ ଗଉଡ଼ ଘର ଦୁଇ ପଡ଼ୋଶୀ । ଦି' ଘର ମଝିରେ କଣ୍ଟାବାଡ଼ଟେ । ପଠାଣ ଘରେ ତିନିପିଲା । ବାହା ହେବାର ଏଗାର ବର୍ଷ ପରେ ବି ଗଉଡ଼ ଘର ଖାଲି । ମୀର ଖାଁର ସାନ ପୁଅ ଅବ୍‌ଦୁଲ ପ୍ରତି ଘନ ବାଗ ଆଉ ତା' ସ୍ତ୍ରୀର ଭାରି ଶରଧା । ପିଲାଟି ଦିନରୁ ମୀର୍ ଖାଁର ପୁଅ ଅବ୍‌ଦୁଲ୍ ଘନ ବାଗ୍ ଘରେ ବଢ଼ିଲା । ତା'କୁ ଛଅ ବର୍ଷ ହେଲା ବେଳକୁ ଘନ ଆଉ ତା' ସ୍ତ୍ରୀ କେତ ତାକୁ ସ୍କୁଲକୁ ନେଲେ ନାଆଁ ଲେଖେଇବାକୁ । ହେଡ୍‌ମାଷ୍ଟର ମଦନ ରାଉତ ପଚାରିଲେ– 'ବାପା ନାଁ କ'ଣ କି ?' ଘନ କହିଲା– 'ଘନ ବାଗ୍ ଲେଖିଦିଅ ।' ଅବ୍‌ଦୁଲ୍ ସେଇ ଦିନଠୁ ହୋଇଗଲା ଅବଦୁଲ୍ ବାଗ୍ ।

ସବୁ ଠିକ୍ ଚାଲିଥାଏ । ସ୍କୁଲ୍‌ରେ ଅବ୍‌ଦୁଲ୍‌କୁ ମାଷ୍ଟ୍ରମାନେ ଭାରି ସୁଖ ପାଆନ୍ତି । ଘରେ, ଘନ ଆଉ ତା' ସ୍ତ୍ରୀ କେତ ବି ଭାରି ଶରଧା କରନ୍ତି । ଠିକ୍ ଚାଲିଥାଏ ସବୁ । ଦିନ ଗଡ଼ି ଚାଲିଲା । ଦିନକର କଥା । ସବୁ ଠିକ୍‌କୁ ବେଠିକ୍ କରିଦେଲା ଘନ ବାଗର ଓଳେଇ ଗାଈ ।

ମୀର୍ ଖାଁ ତା' ବାରିରେ ପରିବା ଚାଷ କରିଥାଏ । ବାଇଗଣ ଆଉ ପାତଳ ଘଣ୍ଟା । ଏମିତି ଫଳିଥାଏ ଯେ, ଗଲା ଆଇଲା ବାଲା ଘଡ଼ିଏ ଅଟକି ରହନ୍ତି । ଆଖି

ପୂରେଇ ବାରିର ଫସଲକୁ ଦେଖନ୍ତି । ବାଡ଼ ଭାଙ୍ଗି ସେ ଫସଲକୁ ଦିନେ ଉଜାଡ଼ି ଦେଲା ଗାଈଟି । ସେଇଠୁ ଝାମେଲା ଲାଗିଗଲା ଦି' ପରିବାର ଭିତରେ । ଧୀରେ ଧୀରେ ଝାମେଲା ନ ଛିଣ୍ଡି ବଢ଼ିବାକୁ ଲାଗିଲା । ଏମିତି ହେଲା ଯେ, ମୀର୍ ଖାଁକୁ ଜମିଦାରଙ୍କ ପାଖରେ ଫେରାଦ୍ ହେବାକୁ ପଡ଼ିଲା । ଜମିଦାରୀ ଯାଇଥାଏ ସତ । ହେଲେ, ଜମିଦାରଙ୍କ ଉପରେ ଲୋକଙ୍କ ଭରସା ଥାଏ ଆଗପରି ।



ଜମିଦାର ଲାଲା ଜଗନ୍ନାଥ ସିଂ । ପତଳା ହାଡୁଆ ଚେହେରା । ବାଘୁଆ ନିଶ ହଳକ ଖାଲି ତାଙ୍କର ବଡ଼ପଣକୁ ଜଣେଇ ଦେଉଥାଏ । ମୀର୍ ଖାଁର ଗୁହାରି ଶୁଣିଲେ । ତା'ସ୍ତ୍ରୀକୁ ନେଇ ଆସିବାକୁ କହିଲେ । ଲୋକ ପଠେଇଲେ, ଘନ ତା' ସ୍ତ୍ରୀ ଆଉ ଅବ୍ଦୁଲ୍‌କୁ ନେଇ ଆସିବାପାଇଁ ।

ଉଆସର ବାହାର ପିଣ୍ଡାରେ ଚଟେଇ ପକେଇ ବସିଥାନ୍ତି ଜମିଦାର । ମୀର୍ ଖାଁ ଆଉ ଘନ ପରିବାର ଆସି ତାଙ୍କ ବାଁ ଡାହାଣ ପଟକୁ ଛିଡ଼ା ହୋଇଥାନ୍ତି । ଅବ୍ଦୁଲ୍ ତ ଛ' ବର୍ଷର ଟୋକାଟେ । ଡରିଲା ଡରିଲା ଆଖିରେ ଲାଲାଙ୍କ ବାଘୁଆ ନିଶକୁ ଚାହିଁ ରହିଥାଏ । ଜମିଦାର ତାକୁ ପାଖକୁ ଡାକିଲେ । ଡରି ଡରି ଗଲା ଅବ୍ଦୁଲ । ଜମିଦାର ତ ଭାରି ମଉଜିଆ ଲୋକ । ଅବ୍ଦୁଲ୍ ପିଠିକୁ ଥାପୁଡ଼େଇ କହିଲେ, ''ଡରୁଛୁ କ'ଣ ନାତି । ତୁ

ବୁଢ଼ାକୁ ମୁଁ ବୁଢ଼ା । ଆ, ବସି ମିଠେଇ ଖାଇବା ।'' ଚାହୁଁ ଚାହୁଁ ଥାଳିଆଟାରେ ମିଠେଇ ଆସିଗଲା । ଦଶ ପନ୍ଦରଟା । ଲାଲା କହିଲେ, ''ଖା ନାତି । ତୋ ଠୁ ବଳିଲେ ମୁଁ ଖାଇବି ।''

ଅବ୍‌ଦୁଲ୍ ମିଠେଇ ଖାଇଲା ପାଞ୍ଚସାତଟା । ଆଉ ପାରିଲାନି । ଜମିଦାର କହିଲେ, ''ସାବାସ୍ ନାତି, ଏବେ ତୋ ବାପ-ମା' ପାଖକୁ ଯାଆ ।'' ଅବଦୁଲ୍ ଦଉଡ଼ି ଆସି ଘନ ଆଉ କେତ ପାଖରେ ଠିଆ ହେଲା । ଜମିଦାର କହିଲେ, ''ଅବ୍‌ଦୁଲ୍ ଘନ ଆଉ କେତର ପୁଅ । ମୀର୍ ଆଉ ଫାତିମା ତାକୁ ଜନ୍ମ ଦେଇଛନ୍ତି, ହେଲେ ସେ ଘନ ଆଉ କେତର ।'' ଜମିଦାର ମୁହଁ ଉପରେ କିଏ ଜବାବ୍ ଦେବ । ଇଏ କେମିତି କଥା ବୋଲି ପଚାରିଲା ପଚାରିଲା ଆଖିରେ ଦେଖଣାହାରି ଜମିଦାରଙ୍କୁ ଅନେଇଲେ ।

ଜମିଦାର କହିଲେ, ''ଯିଏ ଯାହାକୁ ଆକଟ କରିବ, ସେ ଜିନିଷ ତା'ର । ଏ ଗାଆଁର ସ୍କୁଲ, ମହାଦେବ ଗୁଡ଼ୀ, ପାଟଖଣ୍ଡ ଗୁଡ଼ୀ, ବୁଢ଼ୀ ଆଈ ଗୁଡ଼ୀ ତା'ର- ଯିଏ ଏସବୁର ଯତ୍ନ ନେଉଛି । ବନ୍ଧକଟା ତା'ର ଯିଏ ତାକୁ ସଫା ସୁତୁରା ରଖିଛି । ଏ ଗାଆଁ ତା'ର- ଯିଏ ଗାଆଁର ଭଲ ଚିନ୍ତା କରୁଛି । ସେପରି ଅବ୍‌ଦୁଲ୍ ସେମାନଙ୍କର- ଯିଏ ତାକୁ ପୁଅ ପରି ପାଳିଛି । ଅବ୍‌ଦୁଲ୍, ଅବ୍‌ଦୁଲ୍ ଖାଁ ନୁହଁ, ଅବ୍‌ଦୁଲ ବାଗ । ଘନ ବାଗ ପୁଅ ଅବ୍‌ଦୁଲ୍ ବାଗ ।''

ଦେଖଣାହାରିଙ୍କ ଚେହେରା ହରଷ ଦେଖାଗଲା । ଜମିଦାରଙ୍କ ନ୍ୟାୟକୁ ପ୍ରଶଂସା କରି ସେମାନେ ବାହୁଡ଼ିଗଲେ ।

ଗୋପବନ୍ଧୁଙ୍କ ମୁହଁରୁ ଏକଥା ଶୁଣି ନରହରିବାବୁ ବି ଅବାକ୍ ଜଣାପଡୁଥାନ୍ତି । ତାଙ୍କ ଚେହେରାରେ ବି ଜମିଦାରଙ୍କ ନ୍ୟାୟକୁ ତାରିଫ୍ କଲାଭଳି ଭାବଟେ ଲାଖିଥାଏ ।

**ଭାରପ୍ରାପ୍ତ ଅଧ୍ୟକ୍ଷ,**<br>
**ଜିଲ୍ଲା ଶିକ୍ଷା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ**<br>
**ବଲାଙ୍ଗୀର**

# ନଡ଼ିଆ ତେଲରୁ ବଢ଼ିଆ ସାବୁନ୍



ଡଃ ସୂର୍ଯ୍ୟମଣି ବେହେରା

ରମାବୋଉ ଭଲ ରାନ୍ଧେ । ଭଲ ଖାଏ । ତା' ଘର ଦୁଆର ବହୁତ ସଫା ସୁତୁରା । ତାକୁ ରୋଗ ହେବାର କେହି କେବେ ଦେଖି ନାହାଁନ୍ତି । ସ୍ୱାମୀ ତାର ବେଶ୍ ଖଟିପାରେ । ଫସଲ ବି ଭଲ ଅମଳ କରେ ।

ରମା ବୋଉ ସତରେ ଏକ କାମିକା ମଣିଷ । ଦିନ ରାତି ସବୁବେଳେ କିଛି ନା କିଛି କାମ କରୁଥିବ । ସାଇ ପଡ଼ିଶା ଏହା ଦେଖନ୍ତି । ତାକୁ ହିଂସା କରନ୍ତି । ରାଗରେ ଗରଗର ହୁଅନ୍ତି ।

ସବିତା ସେ ଗାଁର ଝିଅ । ସହରକୁ ଯାଇ ପାଠ ପଢୁଛି । ଛୁଟି ହେଲେ ଘରକୁ ଆସେ । ଭଲ ଝିଅଟିଏ । ରମା ବୟସର ହେବ । ଦୁହେଁ ଭାରି ସାଙ୍ଗ । ତାଙ୍କ ଘରକୁ ବୁଲିଯାଏ । କେହି ପଚାରିଲେ କୁହେ ରମା ବୋଉ ସତେ କେତେ ଗୁଣର । ତାଙ୍କ ବାଟ ଧରିଲେ କିଛି ଅଭାବ କି ଅସୁବିଧା ହେବାର ନାହିଁ ।

ସେ ଦିନ ସବିତା ରମା ଘରକୁ ଯାଇଥାଏ । ସାଙ୍ଗରେ ତା' ମାଆ ବି ଥା'ନ୍ତି । ମାଆଙ୍କର ଗୁଣ କିନ୍ତୁ ଝିଅର ଠିକ୍ ଓଲଟା । କାହାରି ସାଙ୍ଗରେ ପଡ଼େ ନାହିଁ । ତୁଚ୍ଛାଟାରେ ଯା ତା' ସାଙ୍ଗରେ କଳି ଲାଗନ୍ତି । ସାକ୍ଷାତ୍ ରଣଚଣ୍ଡୀ ।

ସବିତା ଆଉ ତା' ମାଆ ରମାବୋଉ ଘରେ ପହଞ୍ଚି ଦେଖିଲେ ରମାବୋଉ ସାବୁନ୍ ତିଆରି କରୁଛନ୍ତି । ଚୁଲିରେ ଗୋଟିଏ କଡ଼େଇ ବସିଥାଏ । ସାବୁନ ତିଆରି ପାଇଁ ସବୁ ଜିନିଷ ପାଖରେ ଥାଏ । ସବିତାର ମାଆ ରମାବୋଉକୁ ଚୁଲି ପାଖରେ ଦେଖିଲେ । ଛିଗୁଲେଇ କହିଲେ- କ'ଣ କିଲୋ ରମାବୋଉ । ତୁ କାହା ପାଇଁ ଏତେବେଳେ ରାନ୍ଧୁଛୁ ?

ଏମିତିକା କଥା କହିବାର ଦେଖି ସବିତା ତା' ମାଆକୁ ଗାଳିଦେଲା । ମାତ୍ର

ରମାବୋଉ ହସିପକାଇ କହିଲେ- ଅପା ! ନଡ଼ିଆ ତେଲରୁ ବଢ଼ିଆ ସାବୁନ୍ ହୁଏ ବୋଲି ରମାର ବାପା କହୁଥିଲେ । ମୁଁ ଏହା ଶୁଣି ଘରେ ସାବୁନ୍ ତିଆରି କରିବି ବୋଲି କହିଲି । ସେଥିପାଇଁ ଯେଉଁସବୁ ଜିନିଷ ଦରକାର, ସେସବୁ ସେ ଆଣି ଦେଇଛନ୍ତି । କେମିତି କରାହେବ, ତାକୁ ମଧ ବୁଝି ସାରିଛି । ଏଇଲେ ଘରକାମ ସରିଲାରୁ ସାବୁନ୍ ତିଆରି କାମ ଆରମ୍ଭ କରୁଛି । ତୁମେ ବସ । ଦେଖ, ମୁଁ କେମିତି ସାବୁନ୍ ତିଆରି କରୁଛି ।



ଏତେ କଥା ରମାବୋଉ କହିଲା ବେଳକୁ ସବିତାର ମାଆ ଥମ୍ କରି ଆଉ କିଛି ନକହି ରହିଗଲେ । ତା'ପରେ ବିକଳ ହୋଇ ଚାହିଁ ରହିଲେ । ଏହା ଦେଖି ସବିତା ବି ହସି ପକାଇଲା । ଏଇମିତି କିଛି ସମୟ ଗଲାରୁ ସବିତାର ମା' ରମା ବୋଉର ହାତଧରି ପକାଇଲେ । କହିଲେ- ଆଲୋ ! କେମିତି ସାବୁନ୍ ତିଆରି ହୁଏ, ତୁ କର, ମୁଁ ଦେଖିବି ।

ରମାବୋଉ କହିଲେ- ଅପା ! ସାବୁନ୍ ତିଆରିରେ ଏଇସବୁ ଜିନିଷ ଦରକାର । ଏଇଠି ଦେଖ । ଏଠାରେ ନଡ଼ିଆ ତେଲ ରହିଛି । କ୍ଷାର ଅଛି । କିଛି ଲୁଣ ବି ରହିଛି । ଆଉ ପାଣି ବି ମଗ୍‌ରେ ରଖିଛି । ତେବେ ସବୁ ଜିନିଷରୁ ମାପ କରି ଦେଲେ ଯାଇ ସାବୁନ୍ ତିଆରି ଭଲ ଭାବରେ ହୋଇ ପାରିବ ।

ଏବେ ଯେଉଁ ସାବୁନ୍ ତିଆରି କରିବି, ସେଥିପାଇଁ ହେଉଛି–

ନଡ଼ିଆ ତେଲ - ୨୫୦ ଗ୍ରାମ୍

କ୍ଷାର- ୫୦ ଗ୍ରାମ୍

ଲୁଣ - ୫ ଗ୍ରାମ୍

ଜଳ - ଅଧଲିଟର ବା ୫୦୦ ମିଲିଲିଟର

ଏଇ ଦେଖ- ବର୍ତ୍ତମାନ ମୁଁ ପାଣିତକ କଡ଼େଇରେ ଢାଳିଲି । ଜଳନ୍ତା ଚୁଲି ଉପରେ କଡ଼େଇଟି ବସିଥାଏ । ପାଣି ଢାଳି ସାରି ରମାବୋଉ ନଡ଼ିଆ ତେଲକୁ ମଧ୍ୟ ତହିଁରେ ଢ଼ାଳିଦେଲେ । ଆଉ ଖଣ୍ଡିଏ ଚାମୁଚରେ ଘାଣ୍ଟିଦେଲେ ।

ଏହାପରେ କ୍ଷାରକୁ ତହିଁରେ ଅଳ୍ପ ଅଳ୍ପ ମିଶାଇ ପୁଣି ଘାଣ୍ଟି ଚାଲିଲେ । ସବୁ ଜିନିଷ ମିଶିଗଲାରୁ ଦେଖାଗଲା ଏକ ବହଳିଆ ମଣ୍ଡ କଡ଼େଇ ଭିତରେ ରହିଛି ।

ଚୁଲିତ ଜଳୁଥାଏ । ମଣ୍ଡ ବି ଫୁଟୁଥାଏ । ରମାବୋଉ ଏତିକିବେଳେ ଚାମୁଚଟିକୁ ବାହାରକୁ ଆଣି ହାତରେ ଛୁଇଁଲେ । ହାତକୁ ଅଠାଳିଆ ଲାଗିଲା । କହିଲେ- ଅପା ! ସାବୁନ୍ ତିଆରି ହୋଇଗଲା । ଏହା କହି ସେହି ଲୁଣକୁ ତହିଁରେ ମିଶାଇ ଦେଲେ ଓ ଭଲ ଭାବରେ ଘାଣ୍ଟିଦେଲେ । ତାପରେ ଚୁଲିରୁ କଡ଼େଇଟିକୁ ତଳକୁ ଓହ୍ଲାଇଦେଲେ । ପାଖରେ ଗୋଟିଏ ସାବୁନ୍ ଛାଞ୍ଚ ଥାଏ । ଅଠାଳିଆ ମଣ୍ଡକୁ ତା'ଉପରେ ସେ ସେହି ଛାଞ୍ଚରେ ଢାଳି ଦେଲେ । ଆଉ ଖୁସୁଣୀରେ ତା' ଉପରେ ଆସ୍ତେ ଆସ୍ତେ ଚାପିଦେଲେ ।

ସବିତା ଚୁପ୍‌ଚାପ୍ ଏସବୁ ଦେଖୁଥାଏ । ଏଇଠି ପଚାରିଲା- ସାବୁନ୍ ତିଆରି ହୋଇଗଲା ? ତା' ମାଆ ବି ଏହା ଦେଖୁଥିଲେ । ଆଖିକୁ ବିଶ୍ୱାସ କରି ପାରିଲେନି । ପଚାରିଲେ- ରମା ବୋଉ ! ସତରେ କ'ଣ ସାବୁନ୍ ତିଆରି ହୋଇଗଲା ?

ରମାବୋଉ ଏହାଶୁଣି ହସି ପକାଇଲେ । କହିଲେ- ହଁ ଅପା ! ସାବୁନ୍ ତିଆରି ହୋଇଗଲା । ଆଉ ଟିକିଏ ଶୁଖିଯାଉ । ଛାଞ୍ଚରୁ ବାହାର କରି ଆଣିବା । ପାଣି ପକାଇ ଘଷିଲେ ବଢ଼ିଆ ଫେଣ ବାହାରିବ । ସେଥିରେ ଲୁଗା କାଚ, ବଢ଼ିଆ ସଫାହେବ ।

ଦେଖିଲତ, ଏଇ ସାବୁନ୍ ତିଆରି କାମ କେତେ ସହଜ ? ଆମେ ସବୁ ତୁଚ୍ଛାକୁ ଏତେ ପଇସା ଦେଇ ବଜାରରୁ କିଣୁଛେ ।

ସବିତା ବୋଉ କହିଲେ- ତୁ ଯାହା କହିଲୁ ଠିକ୍ ଲୋ । ଆଜି ମୁଁ ବୁଝିଲି । ତୁ କାହିଁକି ଭଲରେ ଚଲୁ । ଏବେ ତୋ ପାଖ ଆଉ ଛାଡ଼ିବି ନାହିଁ । ମୁଁ ନିଇତି ଆସିବି । ଗାଁର ଆଉ ସ୍ତ୍ରୀଲୋକଙ୍କୁ ବି ଡାକିବି । ଏଇଠି ଏକାଠି ହୋଇ କିଛି କିଛି ଭଲ କାମ କରିବା ।

ଏହାଶୁଣି ସବିତା କହିଲା- ଆଲୋ ମାଆ ! ତୁ ସାବୁନ୍ କର, ମହମବତୀ କର, ବଡ଼ି ପାମ୍ପଡ଼ କର, ମସଲାଗୁଣ୍ଡ କର । ଏ ଗୁଡ଼ିକୁ ବିକିଲେ ବେଶ୍ ଦି' ପଇସା ହାତକୁ ଆସିବ । ଆଉ ତୁଚ୍ଛାଟାରେ ବସି ପରକୁ ନିନ୍ଦିଲେ କ'ଣ ହେବ ?

ସେଦିନ ସବିତାର ମାଆ ହାତରେ ଖଣ୍ଡେ ସାବୁନ୍ ଧରି ଘରକୁ ଫେରିଲେ । ଘରେ ଲୁଗାକାଚି ଦେଖିଲେ ବଢ଼ିଆ ସଫା ହେଉଛି । ଫେଣ ବି ବହୁତ ହେଉଛି । ଏହାପରେ କ'ଣ ହେଲା କେଜାଣି ସବୁଦିନ ଘରକାମ ସାରି ସବିତାର ମା, ରମା ଘରକୁ ଯାଉଛନ୍ତି । ଯୋଜନା କରି ମହିଳା ସମିତିଟିଏ ବି କଲେଣି । ବାଡ଼ି ବଗିଚାରେ ଫଳନ୍ତି ଗଛ ଲଗେଇଲେଣି । ଗାଁ ପରିମଳକୁ ସଫା ସୁତୁରା ରଖିବାପାଇଁ ଦିନେ ଦିନେ ରାସ୍ତା ସଫା କାମ ବି କଲେଣି । ଆଖ ପାଖ ଗାଁର ଲୋକେ ଏହାଦେଖି ସେମାନଙ୍କୁ ସାବସ୍ କଲେଣି ।

ପରାମର୍ଶଦାତା,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଓଡ଼ିଶା, ଭୁବନେଶ୍ୱର - ୭୫୨୦୧୮

# ଲେଖକ ଲେଖିକାଙ୍କ ପରିଚୟ

## ଡକ୍ଟର ଚକ୍ରଧର ବିଶ୍ୱାଳ

ଜନ୍ମ : ୧୮-୧-୧୯୪୪

ଜନ୍ମସ୍ଥାନ - ଗ୍ରା : ଶାଳକଣା, ପୋ.ଅ : କୋରେଇ, ଜିଲ୍ଲା : ଯାଜପୁର ।

ଶିକ୍ଷା - ଏମ୍.ଏଡ୍., ଏମ୍.ଏ. (ଓଡ଼ିଆ), ପି.ଏଚ୍.ଡି. (ଶିକ୍ଷା)

ବୃତ୍ତି - ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଅଧୀନରେ ଶିକ୍ଷା ବିଷୟରେ ଅଧ୍ୟାପନା (୨୦-୧୨-୧୯୬୮ ଠାରୁ ୧-୧୦-୧୯୯୦ ପର୍ଯ୍ୟନ୍ତ), କିଛିଦିନ ପାଇଁ ଭୁବନେଶ୍ୱରସ୍ଥ ଶିକ୍ଷକ-ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନର ଉପନିର୍ଦ୍ଦେଶକ, ବିଭିନ୍ନ ଶିକ୍ଷକ-ଶିକ୍ଷା ମହାବିଦ୍ୟାଳୟର ଅଧ୍ୟକ୍ଷ (୧୧-୧୦-୧୯୯୦ଠାରୁ ଅଦ୍ୟାବଧି) ଭାବରେ ଅବସ୍ଥାପିତ । ବର୍ତ୍ତମାନ ନଳିନୀ ଦେବୀ ଶିକ୍ଷକ-ଶିକ୍ଷା ମହାବିଦ୍ୟାଳୟର ଅଧ୍ୟକ୍ଷ ।

ସାହିତ୍ୟକୃତି - ଓଡ଼ିଶାର ବିଭିନ୍ନ ସମ୍ବାଦପତ୍ର ଓ ବିଭିନ୍ନ ପତ୍ରପତ୍ରିକା (ଜନଚେତନା ସମେତ) ମାନଙ୍କରେ ଶତାଧିକ ପ୍ରବନ୍ଧ, ଗଳ୍ପ, କଥା-ପ୍ରବନ୍ଧ, ରମ୍ୟ ରଚନା ଓ କବିତା ପ୍ରକାଶିତ । ମାତୃଭାଷା ଶିକ୍ଷାଦାନ ପଦ୍ଧତି ପୁସ୍ତକର ସହଯୋଗୀ ଲେଖକ । ମାଧ୍ୟମିକ ଶିକ୍ଷା ପରିଷଦ, ରାଜ୍ୟ ଜନଶିକ୍ଷା ସାଧନକେନ୍ଦ୍ର, ଜିଲ୍ଲା ସାକ୍ଷରତା ସମିତି ପ୍ରଭୃତି ବିଭିନ୍ନ ଅନୁଷ୍ଠାନ ଗୁଡ଼ିକରେ ଜଣେ ସଂସାଧକ ହିସାବରେ ତାଲିକା ଭୁକ୍ତ ।

ପୁରସ୍କାର ଓ ସମ୍ମାନ - ଏମ୍.ଏଡ୍. ଏବଂ ଏମ୍.ଏ.(ଓଡ଼ିଆ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର ସହ ସ୍ୱର୍ଣ୍ଣପଦକ ପ୍ରାପ୍ତ । ମଧୁସୂଦନ ରାଓ ଓ ରାଧାନାଥ ରାୟଙ୍କର ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ଶିକ୍ଷାପାଇଁ ଅବଦାନ ଉପରେ ଗବେଷଣା କରି ୧୯୯୧ ମସିହାରେ ପି.ଏଚ୍.ଡ଼ି. ଡିଗ୍ରୀ ପ୍ରାପ୍ତ ।

## ଶ୍ରୀ ଅଶୋକ କୁମାର ମହାନ୍ତି

**ଜନ୍ମ :** ୧୯୫୫

**ଜନ୍ମସ୍ଥାନ** - ଗ୍ରା/ପୋ.ଅ : ପାଳିଆବିନ୍ଧା, ଜିଲ୍ଲା : ଭଦ୍ରକ

**ଶିକ୍ଷା** - ବି.ଏ. ଏବଂ ଖଲ୍ଲିକୋଟ କଳା ମହାବିଦ୍ୟାଳୟରୁ ଶିକ୍ଷା ଗ୍ରହଣ ।

**ବୃତ୍ତି** - ଶିକ୍ଷକତା, ପେଶା ଛବି ଅଙ୍କା, ନିଶା ସାହିତ୍ୟ ସୃଷ୍ଟି ।

**ସାହିତ୍ୟକୃତି** - 'ଠେକୁଆଘର ଠେକୁଆର', 'ଏ ଦୁନିଆଁଟା ଏକ ପାଠଶାଳା' ପୁସ୍ତକ ଦ୍ୱୟ ପ୍ରକାଶିତ ।

**ପୁରସ୍କାର ଓ ସମ୍ମାନ** - (କ) ଚିତ୍ରକଳା ପାଇଁ - ରାଜ୍ୟ ଲଳିତକଳା ଏକାଡେ଼ମୀ ପୁରସ୍କାର, 'ଓ୍ୱା'ରାଜ୍ୟ ପୁରସ୍କାର (ନବରଙ୍ଗ ଚିତ୍ରକଳା ନିକେତନ, ଆନ୍ଧ୍ର), ଗଞ୍ଜାମ ଜିଲ୍ଲା କଳାଶିକ୍ଷକ ସଂଘ, ବ୍ରହ୍ମପୁର ତରଫରୁ ସର୍ବ ଭାରତୀୟ ଚିତ୍ରକଳା ପ୍ରଦର୍ଶନୀ ପୁରସ୍କାର ଏବଂ ବିଭିନ୍ନ ଅନୁଷ୍ଠାନ ତରଫରୁ ଅନେକ ପୁରସ୍କାର ପ୍ରାପ୍ତ ।

(ଖ) ଉତ୍କଳ ସାହିତ୍ୟ ସମାଜ, କଟକ ଏବଂ ଉତ୍ତର ଓଡ଼ିଶା ସାହିତ୍ୟ-ସଂସ୍କୃତି ସମ୍ମେଳନ, କେନ୍ଦୁଝରର ମିଳନୀ ସାହିତ୍ୟ ସଂସଦ ଆଦି ଅନେକ ଅନୁଷ୍ଠାନରୁ ସମ୍ମାନ ଲାଭ ।

## ପ୍ରଫେସର (ଡଃ.) ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର

**ଜନ୍ମ :** ତା - ୨୨-୦୨-୧୯୪୧

**ଜନ୍ମସ୍ଥାନ** - ଗ୍ରା : ଚନ୍ଦନପୁର, ପୋ.ଅ : ଚନ୍ଦନପୁର, ଜିଲ୍ଲା : ପୁରୀ ।

**ଶିକ୍ଷା** - ଏମ୍.ଏଡ୍., ପି.ଏଚ୍.ଡି. (ଜାମିଆ ମିଲିଆ ଇସ୍‌ଲାମିଆ, ନୂଆଦିଲ୍ଲୀ)

**ବୃତ୍ତି** - ଅଧ୍ୟାପନା ଏବଂ ପ୍ରଶାସନ ଦାୟିତ୍ୱ ସଂପାଦନ । ଚାକିରିକାଳ ଭିତରେ କେନ୍ଦ୍ରସରକାରଙ୍କ ଯୁବ କଲ୍ୟାଣ ବିଭାଗରେ ଦୀର୍ଘ ୯ ବର୍ଷ ଉଚ୍ଚ ପଦବୀରେ ଅବସ୍ଥାପିତ । ମାଧ୍ୟମିକ ଶିକ୍ଷା ପରିଷଦ, (ଓଡ଼ିଶା) କଟକର ସଭାପତି, ତଥା ଶିକ୍ଷକ-ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର ନିର୍ଦ୍ଦେଶକ ଭାବରେ କାର୍ଯ୍ୟ ସଂପାଦନା । ଏତଦ୍‌ବ୍ୟତୀତ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ଶିକ୍ଷା ସଂପର୍କୀୟ ଅନେକ କମିଟିର ସଭ୍ୟ । ସଂପ୍ରତି ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ସାଧାରଣ କାର୍ଯ୍ୟକ୍ରମର କାର୍ଯ୍ୟକ୍ରମ ସଂଯୋଜକ ଭାବରେ ଅବସ୍ଥାପିତ ।

**ସାହିତ୍ୟକୃତି** - ବିଭିନ୍ନ ପତ୍ର ପତ୍ରିକାରେ ପ୍ରବନ୍ଧାବଳୀର ପ୍ରକାଶନ ସଂଗେ ସଂଗେ ଇଂରାଜୀରେ ଦୁଇଗୋଟି ପୁସ୍ତକ ଯଥା :- (୧) Administrative Survey Report of Orissa (Publisher- NIEPA) (୨) 5th Educational Survey of Orissa ପ୍ରକାଶିତ ।

**ପୁରସ୍କାର ଓ ସମ୍ମାନ** - ବିଭିନ୍ନ ଅନୁଷ୍ଠାନ ଏବଂ ସାହିତ୍ୟ ସମିତି ଗୁଡ଼ିକରେ ସମ୍ମାନଲାଭ ।

## ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ

**ଜନ୍ମ :** ୧୭-୦୪-୧୯୪୧

**ଜନ୍ମସ୍ଥାନ** - ଗ୍ରା /ପୋ.ଅ : ହଳଦିଆଗଡ଼, ଜିଲ୍ଲା : ଖୋରଧା

**ଶିକ୍ଷା** - ଏମ୍.ଏ. (ଓଡ଼ିଆ), ବି.ଏଡ୍.

**ବୃତ୍ତି** - ୩୫ ବର୍ଷ କାଳ ମାଧ୍ୟମିକ ଶିକ୍ଷା ବିଭାଗର ଭିନ୍ନ ଭିନ୍ନ ପଦବୀରେ କର୍ତ୍ତବ୍ୟ ସଂପାଦନ ।

**ସାହିତ୍ୟକୃତି** - ଅଦ୍ୟାବଧି ନିଜସ୍ୱ ଉଦ୍ୟମରେ ଏବଂ ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଦ୍ୱାରା ସର୍ବମୋଟ ୨୧ ଖଣ୍ଡ ପୁସ୍ତକ ପ୍ରକାଶିତ ।

**ପୁରସ୍କାର ଓ ସମ୍ମାନ** - ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର; ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ; ସଂସ୍କାର ସ୍ମାରକୀ ସମ୍ମାନ, କଟକ, ରାଜ୍ୟ ସ୍ତରୀୟ ଶିଶୁ ସାହିତ୍ୟ ସମ୍ମାନ, କଳାବିକାଶ କେନ୍ଦ୍ର, କଟକ ଓ ବୀରେନ୍ଦ୍ର ଭୂୟାଁ ସ୍ମୃତି ସମ୍ମାନ ।

## ଶ୍ରୀ ଭୁବନାନନ୍ଦ ତ୍ରିପାଠୀ

**ଜନ୍ମ :** ୧୪-୦୩-୧୯୫୪

**ଜନ୍ମସ୍ଥାନ** - ଗ୍ରା : କାନ୍ତିଓ କାଟେଣୀ, ଜିଲ୍ଲା : ଢ଼େଙ୍କାନାଳ

**ଶିକ୍ଷା** - ଏମ୍.ଏ. (ଇତିହାସ), ଏମ୍.ଏ. (ସାଧାରଣ ପ୍ରଶାସନ), ଡି.ଏସ.ଡବ୍ଲୁ (ଏଲ୍.ଡବ୍ଲ୍ୟୁ) ଏଲ୍.ଏଲ୍.ବି.

**ବୃତ୍ତି** - ପେଷାରେ ପରିଚାଳକ, କାର୍ଯ୍ୟରତ ଇସ୍ପାତ୍ ଶିଳ୍ପ ଓ ମାନବ ସମ୍ବଳ ବିକାଶ, ବିଚାରରେ ଜାତୀୟ ବାଦୀ, ସଂସ୍କାରରେ ସନାତନୀ, ଚଳଣିରେ ସରଳତା ପ୍ରିୟ, କର୍ମ ସଂସ୍କୃତିରେ ଦୃଢ଼ ବିଶ୍ୱାସୀ, ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନକାର । ବର୍ତ୍ତମାନ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ନିର୍ଦ୍ଦେଶକ ଭାବରେ କାର୍ଯ୍ୟରତ ।

**ସାହିତ୍ୟକୃତି** - ରାଷ୍ଟ୍ରଦୀପ, ସମାଜ, ପ୍ରଜାତନ୍ତ୍ର, ସମ୍ବାଦ, ଧରିତ୍ରୀ, ସମୟ, ପ୍ରଗତିବାଦୀ, ଜନଚେତନା ଇତ୍ୟାଦି ପତ୍ର ପତ୍ରିକା ଗୁଡ଼ିକରେ ଅର୍ଦ୍ଧ ଶତାଧିକ ପ୍ରବନ୍ଧ, ଗଳ୍ପ, ଅନୁଭୂତି ଆଦି ପ୍ରକାଶିତ । ପ୍ରଥମ ପ୍ରକାଶିତ ପୁସ୍ତକ - ବିଚାର ଓ ବିଶ୍ଳେଷଣ-(୨୦୦୧) ।

**ପୁରସ୍କାର ଓ ସମ୍ମାନ** - ସାପ୍ତାହିକ 'ରାଷ୍ଟ୍ରଦୀପ' କଟକର ନବମ ବସନ୍ତମିଳନ ଉତ୍ସବରେ ଲଳିତ ନିବନ୍ଧ ପାଇଁ ସାହିତ୍ୟ ସମ୍ମାନ ।

## ଶ୍ରୀ ଗୋରାଚାନ୍ଦ ମିଶ୍ର

**ଜନ୍ମ :** ୦୧-୦୪-୧୯୩୦

**ଜନ୍ମସ୍ଥାନ** - ଗ୍ରା : ଗେରଡ଼ା (ଭାୟା : କୁଲାଡ), ଜିଲ୍ଲା : ଗଞ୍ଜାମ

**ଶିକ୍ଷା** -ବାଣପୁର ହାଇସ୍କୁଲ ଓ ପୁରୀ ସାମନ୍ତଚନ୍ଦ୍ର ଶେଖର କଲେଜରୁ ଶିକ୍ଷାଲାଭ ।

**ବୃତ୍ତି** - ସାମ୍ବାଦିକତା

**ସାହିତ୍ୟକୃତି** - ଶିଶୁ ସାହିତ୍ୟ, ପାଠ୍ୟପୁସ୍ତକ, ନାଟକ, ଏକାଙ୍କିକା, ଗଳ୍ପ, କବିତା, ଉପନ୍ୟାସ, ଭ୍ରମଣ କାହାଣୀ, ଜୀବନୀ, ଆଧାତ୍ମିକ ପ୍ରସଙ୍ଗ ଉପରେ ଆଧାରିତ ଶତାଧିକ ପୁସ୍ତକର ରଚୟିତା, ଏତଦ୍‌ବ୍ୟତୀତ ରାମାୟଣ, ମହାଭାରତ, ଭାଗବତ ଆଦି ବହୁ ସାହିତ୍ୟର ପ୍ରଣେତା । ଗୀତା ଜ୍ଞାନେଶ୍ୱରୀର ଅନୁବାଦକ ହିସାବରେ ସୁ-ପରିଚିତ ।

**ପୁରସ୍କାର ଓ ସମ୍ମାନ** - ବହୁ ସାଂସ୍କୃତିକ, ସାମ୍ବାଦିକ, ସାହିତ୍ୟ, ରାଜନୀତି ଓ ସାମାଜିକ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ, ପୁରସ୍କୃତ ଏବଂ ଅଭିନନ୍ଦିତ ।

**ବିଶେଷକୃତି** - ସାପ୍ତାହିକ 'କୃଷକ'ର ସହ ସଂପାଦକ ଓ ଯୁଗ୍ମ ସଂପାଦକ, ଦୈନିକ ପ୍ରଜାତନ୍ତ୍ରର ସହସଂପାଦକ, ବାର୍ତ୍ତା ସଂପାଦକ ଓ ମାସିକ ପତ୍ରିକା 'ପ୍ରତିଭା'ର ସଂପାଦକ । ଅରୁଣାଚଳ ପ୍ରଦେଶର ଭୂତପୂର୍ବ ରାଜ୍ୟପାଳ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ବ୍ୟକ୍ତିଗତ ସଚିବ ଭାବରେ କାର୍ଯ୍ୟ ସଂପାଦନ ।

## ଶ୍ରୀମତୀ ବନଜ ଦେବୀ

**ଜନ୍ମ**- ୧୯୪୧

**ଜନ୍ମସ୍ଥାନ** - ପୁରୀ

**ସାହିତ୍ୟକୃତି** - ଦଶ ବର୍ଷ ବୟସରୁ କବିତା ଲେଖା ଆରମ୍ଭ କରି 'ମୀନାବଜାର', 'ଝଙ୍କାର', 'ସୁଚରିତା', 'ଅମୃତାୟନ', 'ନବରବି' ପ୍ରଭୃତି ପତ୍ରିକାର ନିୟମିତ ଲେଖିକା । କେତୋଟି ବେତାର ନାଟିକା ମଧ୍ୟ ରେଡ଼ିଓରେ ପ୍ରଚାରିତ । ଏ ଯାବତ୍ ଛଅଟି ଗଳ୍ପ ସଂକଳନ, ଛଅଟି ଉପନ୍ୟାସ, ତିନୋଟି କବିତା ସଂକଳନ, ଦୁଇଟି ଅନୁବାଦ, ଗୋଟିଏ ଜୀବନୀ ଗ୍ରନ୍ଥ ପ୍ରକାଶିତ ।

**ପୁରସ୍କାର ଓ ସମ୍ମାନ** - ୫୦ଟି ବେଦମନ୍ତ୍ରର ଓଡ଼ିଆ ପଦ୍ୟାନୁବାଦ କରି ଆର୍ଯ୍ୟସମାଜ, ଭୁବନେଶ୍ୱର ଦ୍ୱାରା ୧୯୯୪ରେ ସମ୍ମାନିତ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ କେତେକ ଅନୁଷ୍ଠାନ ଦ୍ୱାରା ମଧ୍ୟ ସମ୍ମାନିତା ।

ସଂପ୍ରତି ଓଡ଼ିଶା ଲେଖିକା ସଂସଦର ଓ ଓଡ଼ିଶା ଲେଖକ ସମବାୟ ସମିତିର ଉପସଭାପତି ।

## ଶ୍ରୀ ଅଚ୍ୟୁତ ପୁରୋହିତ

**ଜନ୍ମ :** ୧୨-୦୫-୧୯୬୩

**ଜନ୍ମସ୍ଥାନ** - ଗ୍ରା : ବକଟୀ, ପୋ.ଅ : ବକଟୀ, ଭାୟା - ସାଲେଭଟା, ଜିଲ୍ଲା : ବଲାଙ୍ଗୀର ।

**ଶିକ୍ଷା** - ଏମ୍.କମ୍.(ବାଣିଜ୍ୟ)

**ସାହିତ୍ୟକୃତି** - ତାଧିନଧିନା (ଶିଶୁ କବିତା), ଉଲୁରୁ ଉଲୁରୁ ବାଇ (ଶିଶୁ କବିତା), ଫାଇଲ୍ ଚାଷ (ବ୍ୟଙ୍ଗ କବିତା ସଂକଳନ), ବୁଡ଼ବକ୍ ଉବାଚ (ବ୍ୟଙ୍ଗ କବିତା ସଂକଳନ) ।

**ପୁରସ୍କାର ଓ ସମ୍ମାନ** - ରସରାଜ ଉପାଧି (ସରସ ସାହିତ୍ୟ ସମିତି, କଟକ); କଣ୍ଟେଇ ସମ୍ମାନ, କଣ୍ଟେଇ, କଟକ; ସାହିତ୍ୟ ସେବା ସମ୍ମାନ, ମନଭେଦୀ, ଟିଟିଲାଗଡ଼; ଲାୟନ କ୍ଲବ୍, ବଲାଙ୍ଗୀର, ରୁଦ୍ର ଆହ୍ୱାନ (ସାପ୍ତାହିକ), ବଲାଙ୍ଗୀର; ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦ ସମ୍ମାନ; ସାଂସ୍କୃତି ସଂଘର ଧୀରପୁର ସମ୍ମାନ ।

## ଶ୍ରୀ ଜଗଦାନନ୍ଦ ଛୁରିଆ

**ଜନ୍ମ :** ୦୧-୧୨-୧୯୪୪

**ଜନ୍ମସ୍ଥାନ** - ଗ୍ରା : କୁଟେନପଲ୍ଲୀ, ପୋ.ଅ : ଦାଶପୁର, ଜିଲ୍ଲା : ବଲାଙ୍ଗୀର

**ଶିକ୍ଷା** - ଏମ୍.ଏ. (ଓଡ଼ିଆ), ବି.ଏଡ୍.(ଡିଷ୍ଟିଂଙ୍ଗସନ୍)

**ବୃତ୍ତି** - ଶିକ୍ଷକତା । ସଂପ୍ରତି ବଲାଙ୍ଗୀର ଜିଲ୍ଲା ଶିକ୍ଷକ ଶିକ୍ଷା ଓ ପ୍ରଶିକ୍ଷଣ ଅନୁଷ୍ଠାନରେ ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରୁଛନ୍ତି ।

**ସାହିତ୍ୟକୃତି** - ବାହୁଡ଼ାଯାତ୍ରୀ, ଭାରତ ମା'ର ଛୁଆରେ ମୁହିଁ, ଶୀର୍ଷକ ଦୁଇଗୋଟି ପୁସ୍ତକ ପ୍ରକାଶିତ । ଏତଦ୍‌ବ୍ୟତୀତ ସାକ୍ଷରତା ପୁସ୍ତକ 'ସହଜପଥ' (ଭାଗ-୨)ର ସହ ଲେଖକ । 'ଝଙ୍କାର', 'ପ୍ରଜାତନ୍ତ୍ର', 'ଧରିତ୍ରୀ', 'ରୁଦ୍ର ଆହ୍ୱାନ', 'ଜନଚେତନା' ଆଦି ବିଭିନ୍ନ ପତ୍ର ପତ୍ରିକାରେ ଅନେକ ପ୍ରବନ୍ଧ, ଗଳ୍ପ, କବିତା ପ୍ରକାଶିତ ।

**ପୁରସ୍କାର ଓ ସମ୍ମାନ** - ବଲାଙ୍ଗୀର ଜିଲ୍ଲାପାଳଙ୍କ ଦ୍ୱାରା ୧୯୮୭ରେ ରୁଦ୍ର ଆହ୍ୱାନ, ମୈତ୍ରୀ ମହଲ ଦ୍ୱାରା ସ୍ୱର୍ଣ୍ଣ ଉତ୍ସବ ପୁରସ୍କାର । କଟକସ୍ଥ ଉତ୍କଳ ଯୁବ ସାଂସ୍କୃତିକ ସଂଘ ଦ୍ୱାରା 'ନାଟ୍ୟଭୂଷଣ' ସମ୍ମାନ ପ୍ରାପ୍ତ ।

# ପ୍ରଫେସର (ଡଃ.) ସୂର୍ଯ୍ୟମଣି ବେହେରା

**ଜନ୍ମ :** ୦୫-୦୬-୧୯୪୧

**ଜନ୍ମସ୍ଥାନ -** ଗ୍ରା : କଇଁସାରୀ, ପୋ.ଅ : କଇଁସାରୀ, ଜିଲ୍ଲା : ମୟୂରଭଞ୍ଜ ।

**ଶିକ୍ଷା -** ଏମ୍.ଏସ୍.ସି. (ରସାୟନ ବିଜ୍ଞାନ), ପି.ଏଚ୍.ଡି. (ରସାୟନ ବିଜ୍ଞାନ), ଏଫ୍.ଆଇ.ସି. (ରସାୟନ ବିଜ୍ଞାନ)

**ବୃତ୍ତି -** ଅଧ୍ୟାପନା ଏବଂ ପ୍ରଶାସନ ଦାୟିତ୍ୱ ସଂପାଦନା ବ୍ୟତୀତ ସରକାରୀ ମହାବିଦ୍ୟାଳୟ ଗୁଡ଼ିକରେ ଅଧ୍ୟାପକ, ପ୍ରାଧ୍ୟାପକ, ଅଧ୍ୟକ୍ଷ, ଉପନିର୍ଦ୍ଦେଶକ ଏବଂ ଗ୍ରେଡ୍-୧ ଅଧ୍ୟକ୍ଷ ହିସାବରେ କାର୍ଯ୍ୟକରି ଅବସର ଗ୍ରହଣ ପରେ ଉପକରଣ ଏବଂ ଗଣମାଧ୍ୟମ ଉପବିଭାଗରେ ପରାମର୍ଶଦାତା ହିସାବରେ ସଂପ୍ରତି ଅବସ୍ଥାପିତ ।

**ସାହିତ୍ୟକୃତି -** ବିଜ୍ଞାନମେଳା, ଜନସେବାରେ ବିଜ୍ଞାନ, ଆଜିର ବିଜ୍ଞାନ, ଜନପ୍ରିୟ ବିଜ୍ଞାନ ସାହିତ୍ୟର ମାର୍ଗଦର୍ଶନ, ରସାୟନ ବିଜ୍ଞାନ (ଭାଗ-୧ ଓ ଭାଗ-୨), ପ୍ରାକ୍ଟିକାଲ ରସାୟନ ବିଜ୍ଞାନ ଇତ୍ୟାଦି ୧୮ ଖଣ୍ଡ ପୁସ୍ତକ ଅଦ୍ୟାବଧି ପ୍ରକାଶିତ । ଏତଦ୍‌ବ୍ୟତୀତ 'ବିଜ୍ଞାନ ଦିଗନ୍ତ', 'ଧରିତ୍ରୀ', 'ସମାଜ', 'ଜନଚେତନା' ଆଦି ପତ୍ରପତ୍ରିକାରେ ଅନେକ ପ୍ରବନ୍ଧ କବିତା ପ୍ରକାଶିତ । ଆକାଶବାଣୀ କଟକ କେନ୍ଦ୍ରର ଜଣେ ନିୟମିତ ବିଜ୍ଞାନ ପ୍ରଚାରକ ।

**ପୁରସ୍କାର ଓ ସମ୍ମାନ -** ଆକାଶବାଣୀ, କଟକ, ମୀନାବଜାର, ପ୍ରଜାତନ୍ତ୍ର, ଓଡ଼ିଶା ବିଜ୍ଞାନ ଏକାଡ଼େମୀ, ଜନପ୍ରିୟ ବିଜ୍ଞାନମଞ୍ଚ ଆଦି ବିଭିନ୍ନ ଅନୁଷ୍ଠାନରୁ ପୁରସ୍କାର ପ୍ରାପ୍ତ ।